# ଜହ୍ନ ରାଇଜରେ ମଣିଷ

ଲେଖକ :

ଡକ୍ଟର ଜଗନ୍ନାଥ ମହାନ୍ତି

ପ୍ରକାଶକ



କୋଣାର୍କ ପବ୍ଲିଶର୍ସ

ବିନୋଦବିହାରୀ, କଟକ-୨

# ଜହ୍ନ ରାଇଜରେ ମଣିଷ

ଲେଖକ :

**ଡକ୍ଟର ଜଗନ୍ନାଥ ମହାନ୍ତି**

ପ୍ରକାଶକ :

ଚନ୍ଦ୍ରଶେଖର ପାତ୍ର

**କୋଣାର୍କ ପବ୍ଲିଶର୍ସ**

ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ : ୧୯୮୮

ଦ୍ୱିତୀୟ ପ୍ରକାଶ : ୧୯୯୦

ମୁଦ୍ରଣ :

**କୋଣାର୍କ ପ୍ରିଣ୍ଟର୍ସ**

ଖଟବିନ୍ସାହି, କଟକ-୮

ମୂଲ୍ୟ :

**ଅଠର ଟଙ୍କା ପଚିଶ ପଇସା**

# ସୂଚୀପତ୍ର





# କେତେ ବଡ଼ ଏଇ ଜଗତ !

କେତେ ବଡ଼ ଆମର ଏଇ ପୃଥିବୀ ! କେତେ ତା'ର ଜୀବଜନ୍ତୁ ଆଉ ଗଛ ଲତା !! କେତେ ତାର ନଈ ନାଳ, ବଣ ପାହାଡ଼ ! କେତେ ଦରିଆ, କେତେ ଦେଶ ଏଇ ଆମ ପୃଥିବୀରେ ।



( ଆକାଶ )

କେତେ ବଡ଼ ଏଇ ଆକାଶ ! କେତେ ତାର ଗ୍ରହତାରା, ସୂର୍ଯ୍ୟ ଚନ୍ଦ୍ର ! ପୃଥିବୀ ଉପରେ କେତେ ବଡ଼ ବାୟୁମଣ୍ଡଳ !

ଏହାର ସୀମା ସରହଦ କେତେ ? କେଉଁଯାଏ ଏଇ ବାୟୁ- ମଣ୍ଡଳ ବ୍ୟାପି ରହିଛି ? ବୈଜ୍ଞାନିକମାନେ କହନ୍ତି ଯେ, ୧୬୦ କିଲୋମିଟର ଉଚ୍ଚ ଯାଏ ଆମ ପୃଥିବୀକୁ ବାୟୁମଣ୍ଡଳ ଘେରି ରହିଛି ।

ଏହାକୁ ଆକାଶ କୁହାଯାଇ ପାରେ । କିନ୍ତୁ ତା ଉପରକୁ ଅଛି ସୀମାହୀନ ସରହଦ । ତାକୁ ମହାକାଶ ବା ମହାଶୂନ୍ୟ କହୁଁ । ତାହା ପୁଣି କେତେ ଦୂରକୁ ବ୍ୟାପିଛି । ମଣିଷ ତାହା ଏ ପର୍ଯ୍ୟନ୍ତ କଳନା କରିପାରି ନାହିଁ ।

ମଣିଷ ଜାଣିବାରେ ସୂର୍ଯ୍ୟ ଗୋଟିଏ ବଡ଼ ନକ୍ଷତ୍ର । ତାର ପରିବାରଟିରେ ବୁଧ, ଶୁକ୍ର, ମଙ୍ଗଳ, ଶନି, ବୃହସ୍ପତି,




ବରୁଣ ପ୍ରଭୃତି ନଅଟି ଗ୍ରହ ରହିଛି । ଏହାକୁ ସୌରଜଗତ କୁହାଯାଏ । ଏହା ପୁଣି କେତେ ବଡ଼ କଳନା କରିବା ଆଦୌ ସହଜ ନୁହେଁ !

ଆମେ ଯଦି ଘଣ୍ଟାକୁ ୯୬୦ କିଲୋମିଟର ବେଗରେ ଗୋଟିଏ ଯାନରେ ଯିବା, ତେବେ ଆମର ସବୁଠୁ ପାଖ ଗ୍ରହ ଶୁକ୍ରରେ ପହଞ୍ଚିବାକୁ ପ୍ରାୟ ୫ ବର୍ଷ ଲାଗିଯିବ । ସେମିତି ମଙ୍ଗଳରେ ପହଞ୍ଚିବା ପାଇଁ ୬ ବର୍ଷ ଲାଗିଯିବ । ବୁଧକୁ ଯିବାପାଇଁ ୭ବର୍ଷ ସମୟ ଦରକାର । ଶନି ଗ୍ରହକୁ ଯିବାପାଇଁ ୯୯ ବର୍ଷ ଲାଗିବ ।

ସେହି ଯାନରେ ଗଲେ ଆମ ପାଖରେ ଥିବା ଉପଗ୍ରହ ଚନ୍ଦ୍ରରେ ପହଞ୍ଚିବା ପାଇଁ ୧୧ ଦିନ ଲାଗିବ । ଅଥଚ ସୂର୍ଯ୍ୟ ପାଖକୁ ଯିବାପାଇଁ ୧୬ ବର୍ଷ ଦରକାର । ସବୁଠୁ ନିକଟରେ ଥିବା ନକ୍ଷତ୍ର ପାଖରେ ପହଞ୍ଚିବାପାଇଁ ଏହି ଯାନଟିକୁ ୩୬ ବର୍ଷ ଲାଗିଯିବ ! ପୁଣି ଏହି ନକ୍ଷତ୍ରଠାରୁ ଦୂରରେ, ବହୁ ଦୂରରେ କେତେ ଯେ ଗ୍ରହ ନକ୍ଷତ୍ର ପୁଣି ଅଛି ତାର କଳନା ନାହିଁ ! ଏହି ସବୁକୁ ନେଇ ବିଶ୍ୱବ୍ରହ୍ମାଣ୍ଡ !

ଏହି ବିଶ୍ୱବ୍ରହ୍ମାଣ୍ଡ କେତେ ବିରାଟ ! ଏହାର ମହାକାଶ କି ବଡ଼ ! ତାର ଆଦି ଅନ୍ତ ନାହିଁ । କେତେ ସୂର୍ଯ୍ୟ, କେତେ ଚନ୍ଦ୍ର, କେତେ ତାରା ଏହି ମହାକାଶରେ ଦିନରାତି ଘୂରୁଛନ୍ତି, ତାର ଇୟତ୍ତା ନାହିଁ । ତେଣୁ ଭାଗବତରେ ଲେଖା ଅଛି—

ବ୍ରହ୍ମାଣ୍ଡ ମାଳ ମାଳ ହୋଇ
ତୋ ଲୋମ କୂପେ ବିରାଜଇ ।

ସ୍ୱଭାବକବି ଗଙ୍ଗାଧର ମଧ୍ୟ ଗାଇଛନ୍ତି—

ବିଶ୍ୱଜୀବନ ହେ, ତୁମ୍ଭଙ୍କୁ କରୁଣାସିନ୍ଧୁ
ବୋଲିବାକୁ ମନ ବଳୁନାହିଁ ତେଣୁ
ସିନ୍ଧୁ ତୁମ୍ଭ କୃପା ବିନ୍ଦୁ ।

ତୁମ ଭଜନରେ ହେବନାହିଁ ନାଥ
ମାଳା ଜପିବାକୁ ବାଧ୍ୟ ।
କୋଟି କୋଟି ଗ୍ରହ କଣ୍ଠି ଯେ ମାଳାର
କେ ଜପି କରିବ ସାଧ୍ୟ !

ଏହି ବିଶ୍ୱବ୍ରହ୍ମାଣ୍ଡ ମନୁଷ୍ୟକୁ ଅବାକ୍ କରେ । ଏହି ମହାକାଶ ମନୁଷ୍ୟକୁ ଯୁଗ ଯୁଗ ଧରି ଆଶ୍ଚର୍ଯ୍ୟ କରିଛି । ଏହାର ଅନନ୍ତ ରୂପ ଦେଖି ସେ ଦେଖିପାରି ନାହିଁ । ଏହାର ଅକଳନ୍ତା ଆକାରର ସେ କଳନା କରିପାରେ ନାହିଁ । ଏଠାରେ ଥିବା କୋଟି କୋଟି ଚନ୍ଦ୍ର ନକ୍ଷତ୍ର ତାକୁ ଭାବିବା କରି ଦେଉଛି ! ସେ ହତବାକ୍ ହୋଇଯାଏ ।

ସେ ତେଣୁ ତାକୁ ଜାଣିବାକୁ ଆକୁଳ ହୋଇଛି । ଅଧିକରୁ ଅଧିକ କଳନା କରିବାରେ ଲାଗିଛି । ତାକୁ ଚିହ୍ନିବାକୁ ବାରମ୍ବାର ଚେଷ୍ଟା କରିଛି । ଏଥିପାଇଁ ସେ କେତେ ଦୁଃଖ କଷ୍ଟ ବହିଛି । କେତେ ମଧ୍ୟ ଜୀବନ ବଳି ଦେଇଛି ।

ମଣିଷର ଏହି ଆଶା ତାର ସାହିତ୍ୟରେ ପ୍ରକାଶ ପାଇଛି । କଳାରେ ରୂପ ନେଇଛି । ଆମର ପୁରାଣରେ ଅଛି ନାରଦ ତାଙ୍କର ମନ ପବନ ଗତିରେ ସାରା ବିଶ୍ୱବ୍ରହ୍ମାଣ୍ଡ ବୁଲୁଥିଲେ । ରାବଣ ପୁଷ୍ପକ ବିମାନରେ ଚଉଦଭୁବନକୁ ଉଡ଼ି ଯାଉଥିଲେ ।

ଦେବତାମାନେ ରଥରେ ବସି ସରଗରୁ ମରତକୁ ଆସୁଥିଲେ । ଯେତେବେଳେ ଚାହୁଁଥିଲେ ସେମାନେ ବୁଲି ଆସୁଥିଲେ । ବହୁ ଦେଶର କବି ଲେଖକମାନେ ନିଜ ମନରୁ

ଅନେକ କଥା ଲେଖିଯାଇଛନ୍ତି । କେତେକଙ୍କ ଲେଖାରେ



(ନାରଦ କଠଉ ସାହାଯ୍ୟରେ ଉଡୁଛନ୍ତି)

ମହାକାଶରେ ଉଡ଼ି ବୁଲିବାର ବର୍ଣ୍ଣନା ରହିଛି । କେତେକ ମହାକାଶରେ ଉଡ଼ି ବୁଲିବାର ଚିତ୍ର ଅଙ୍କିଛନ୍ତି

ଏପରି ମନଗଢ଼ା କଥା ଛଡ଼ା ଅନେକ ବୈଜ୍ଞାନିକ ମଧ୍ୟ ଏଥିରେ ଲାଗିଛନ୍ତି । ନାନା ଗ୍ରହକୁ ଯିବା ପାଇଁ ବହୁ ତଥ୍ୟ ଯୋଗାଇ ଦେଇଛନ୍ତି । କେତେକ ବୈଜ୍ଞାନିକ ଗ୍ରହଯାତ୍ରା, ଗ୍ରହର ଅଦ୍ଭୁତ ଜୀବଜନ୍ତୁ, ଜଳବାୟୁ, ସୁବିଧା ଅସୁବିଧା ସବୁ ବର୍ଣ୍ଣନା କରିଛନ୍ତି । ସେମାନେ ଗଳ୍ପ ଉପନ୍ୟାସ ମାନ ଲେଖିଯାଇଛନ୍ତି । ସେଥିରୁ ଅନେକ କଥା ଆଜି ସତରେ ପରିଣତ ହୋଇଛି ।

# ହାଲୁକା ଯାନରୁ ଭାରୀ ଯାନ

ଆକାଶରେ ଉଡ଼ିବା ପାଇଁ ମଣିଷର ଖୁବ୍ ମନ। ହେଲେ ଚଢ଼େଇ ପରି ତାର ଡେଣା ନାହିଁ। ଉଡ଼ିବ କିପରି? ସେଥିପାଇଁ କେତେ ଚେଷ୍ଟା କଲା। ଏଥିପାଇଁ କେତେ ଦୁଃସାହସ କଲା। କେତେ ଦୁର୍ଘଟଣାର ସମ୍ମୁଖୀନ ହେଲା। କେତେ ମୂଲ୍ୟବାନ ଧନ ଜୀବନ ନଷ୍ଟ ହେଲା। ଏ ସବୁର ଇୟତ୍ତା ନାହିଁ। ତଥାପି ସେ ଚେଷ୍ଟା କରିବାରେ ଲାଗିଲା।

କେଉଁଠି ମଣିଷ ନିଜ ଦେହରେ ହାତ ତିଆରି ଡେଣା ବାନ୍ଧି ଉଡ଼ିବାକୁ ଚେଷ୍ଟା କଲା। ତଳେ ପଡ଼ିଯାଇ ଗୋଡ଼ହାତ ଭାଙ୍ଗିଲା। କେଉଁଠି ସେ ଶେଷ ନିଶ୍ୱାସ ଛାଡ଼ିଲା। କେତେବେଳେ ମଣିଷ ବେଲୁନ୍‌ରେ ଗରମ ପବନ ପୂରାଇ କିଛିବାଟ ଉଡ଼ିଗଲା। କେତେବେଳେ ତଳେ ପଡ଼ି ମେରୁହାଡ଼କୁ ଗୁଣ୍ଡ କରି ମରଣ ମୁହଁକୁ ଗଲା।

କେଉଁଠି ମଣିଷ ବାୟୁଠାରୁ ହାଲୁକା ବାଷ୍ପ ଉଦ୍‌ଜାନକୁ ବେଲୁନ୍‌ରେ ଭର୍ତ୍ତି କରି ବହୁ ଦୂରକୁ ଉଡ଼ିଗଲା। କେଉଁଠି ବେଲୁନ୍‌ରେ ବାଷ୍ପଯନ୍ତ୍ର ଖଞ୍ଜି ଗୋଟିଏ ଦିଗରେ ଶୀଘ୍ର ଉଡ଼ିପାରିଲା।

ଶେଷରେ ଆସିଲା ୧୯୦୩ ମସିହା ଡିସେମ୍ବର ମାସ ୧୭ ତାରିଖ। ଅରଭିଲ ରାଇଟ୍ ଓ ଉଇଲବର୍ ରାଇଟ୍ ଏହି

ବୁଝଗଲ ଗୋଟିଏ ଇଞ୍ଜିନ୍ ଖଞ୍ଜା ଉଡ଼ାଜାହାଜ ତିଆରି କଲେ । ସେଥିରେ ସେମାନେ ଆକାଶରେ ଉଡ଼ିପାରିଲେ ।

ତାପରେ ମଣିଷ ଏହାକୁ ଯନ୍ତ୍ରପାତିରେ ଉନ୍ନତ କଲା । ହଜାର ହଜାର କିଲୋମିଟର ଦୂର ଆକାଶକୁ କେତୋଟି ଘଣ୍ଟାରେ ପାରିହେଲା । କି ନଦୀ, କି ସମୁଦ୍ର, କି ପାହାଡ଼, କି ଜଙ୍ଗଲ, କି ଗାଁ, କି ସହର । ସବୁର ଉପରେ ସେ ଶହ ଶହ କିଲୋମିଟର ବେଗରେ ଉଡ଼ିବାରେ ଲାଗିଲା । ଦିନ ରାତି, ଖରା ବର୍ଷା, ଶୀତ କାକର ତାକୁ ବାଧା ଦେଇପାରିଲା ନାହିଁ ।

ମଣିଷ ଏମିତି ଆକାଶରେ ଉଡ଼ୁ ଉଡ଼ୁ ଚାହିଁଲା ଉପରି ମହାକାଶରେ ଉଡ଼ନ୍ତା । ଉପରି ଗ୍ରହ ଉପଗ୍ରହକୁ ଯା'ନ୍ତା ! ଜହ୍ନମାମୁଁ, ଶୁକ୍ର, ମଙ୍ଗଳ ପ୍ରଭୃତିକୁ ଯାଇ ସେଠାରେ କ'ଣ ଅଛି ଦେଖନ୍ତା । ସେଠାରେ ଜୀବଜନ୍ତୁ, ବଣପାହାଡ଼, ନଦୀନାଳ ଆଦି ଅଛି କି ନାହିଁ ଜାଣିପାରନ୍ତା !

କିନ୍ତୁ ଏଥିରେ ଗୋଟିଏ ବଡ଼ ବାଧା ହେଲା ମାଧ୍ୟାକର୍ଷଣ ଶକ୍ତି ! ଏହି ଶକ୍ତି ପୁଣି କ'ଣ ? ଆମେ ବାୟୁ ଭିତରେ ରହି ତାକୁ ଦେଖି ପାରୁ ନାହିଁ ସେମିତି ଏକ ବଡ଼ ଶକ୍ତିର ଘେର ମଧ୍ୟରେ ଚଳି ଆମେ ତାକୁ ଅନୁଭବ କରି ପାରୁ ନାହିଁ । ଏଠାରେ ଗୋଟିଏ ଘଟଣା ବର୍ଣ୍ଣନା କରିବା ଉଚିତ ।

ଜଣେ ଲୋକ ତାଙ୍କ ବଗିଚାରେ, ବୁଲୁଥିଲେ । ଗୋଟିଏ ଆମ୍ବ ଗଛରୁ ଫଳଟିଏ ଖସି ପଡ଼ିଲା । ସେ ଚମକି ପଡ଼ିଲେ । ତାଙ୍କ ମନ ଭିତରେ ଗୋଟିଏ ଭାବନା ଖେଳିଗଲା । ସେ ଭାବିବାରେ ଲାଗିଲେ ଆମ୍ବଟି ଉପରକୁ ନ ଯାଇ ତଳକୁ ଖସିଲା କାହିଁକି ?



( ନିଉଟନ ଆମ୍ବ ଖସିବା ଦେଖୁଛନ୍ତି )

ଗଛ ଡାଳରେ ଝୁଲୁଥିଲା । ସେଠାରୁ ଝଡ଼ି ଯେ କୌଣସି ଅଡ଼େ ଯାଇ ପାରିଥାନ୍ତା । ମାଟି ଉପରେ ତାହା ଖସିବାର କାରଣ କ'ଣ ?

ସାଧାରଣ ମଣିଷ ଏହି ଚିନ୍ତାକୁ ବୋକାମି ବା ପାଗଳାମି ବୋଲି ଭାବିବ । ସବୁଦିନିଆ ସାଧାରଣ ଘଟଣାଟାଏ । ଏଥିରେ ଚିନ୍ତା କରିବାର କ'ଣ ଅଛି ? ପ୍ରଶ୍ନ



( ନିଉଟନ୍ )

କରିବା କି ଦରକାର ? ସବୁ ଜିନିଷ ଯେମିତି ତଳକୁ ଖସେ, ଆତଟି ସେମିତି ତ ତଳେ ପଡ଼ିଲା । ମାତ୍ର ସେ ଲୋକ ସାଧାରଣ ମଣିଷ ନ ଥିଲେ । ସେ ଥିଲେ ଜଣେ ବୈଜ୍ଞାନିକ । ନାଁ, ତାଙ୍କର ଆଇଜାକ୍ ନିଉଟନ୍ ।

ସେ ବହୁତ ଚିନ୍ତା କରି ନାନା ପରୀକ୍ଷା କଲେ । ଠିକ୍ କଲେ ଯେ ପୃଥିବୀର ଗୋଟିଏ ଆକର୍ଷଣଶକ୍ତି ଅଛି । ସେ ସବୁ ଜିନିଷକୁ ନିଜଆଡ଼କୁ ଟାଣେ । ଆଉଟି ସେହି ଶକ୍ତି

ବଳରେ ତଳକୁ ଟାଣି ହୋଇଗଲା । ଏହି ଶକ୍ତିର ନାଁ ମାଧ୍ୟାକର୍ଷଣ ଶକ୍ତି । ଉପରକୁ ଟେକାଟିଏ ଫିଙ୍ଗିଲେବି ସେ ପୁଣି ତଳକୁ ଖସିପଡ଼େ । ମାଟି ମାଆ ସତେ ଯେମିତି ସବୁରିଙ୍କୁ ନିଜ କୋଳକୁ ଟାଣିଆଣେ କି ମାଟି ପଥର କି ଜୀବଜନ୍ତୁ !

କୌଣସି ଯାନ ଗ୍ରହ ଉପରକୁ ପଠାଇବାକୁ ହେଲେ ପ୍ରଥମେ ତାକୁ ମାଟିମାଆର ଏଇ ବନ୍ଧନକୁ ତୁଟାଇବାକୁ ପଡ଼ିବ । ଆମେ ସିନା ଜାଣି ପାରୁନାହୁଁ, କିନ୍ତୁ ଏଇ ବନ୍ଧନ ଖୁବ୍ ଟାଣ ! ବୈଜ୍ଞାନିକ ପରୀକ୍ଷା କରି ଦେଖିଲେ ଯେ ଘଣ୍ଟାକୁ ପ୍ରାୟ ୩୯ ହଜାର କିଲୋମିଟର ବେଗରେ ଗତି- କଲେ ଯାଇ ଏଇ ଶକ୍ତିକୁ ଅତିକ୍ରମ କରିପାରିବ ।

ଏଥିପାଇଁ ଦରକାର ରକେଟ୍ ପରି ଏକ ଖୁବ୍ ଶକ୍ତିଶାଳୀ ବସ୍ତୁ । ତା ସାହାଯ୍ୟରେ ମଣିଷ ତାର କୃତ୍ରିମ ଗ୍ରହ ଉପଗ୍ରହକୁ ମହାକାଶକୁ ପଠାଇବାକୁ ସମର୍ଥ ହୋଇ ପାରିଲା । କିନ୍ତୁ ହାବେଳି ବାଣରୁ ଏଇ ରକେଟ୍‌ର ଜନ୍ମ ! କିପରି ଯୁଗ ଯୁଗ ଧରି ଏହାର ଉନ୍ନତି ଘଟିଲା ତାହା ଖୁବ୍ ଚିତ୍ତାକର୍ଷକ ।

ବହୁ ପୂର୍ବକାଳର କଥା । ଚୀନ ଦେଶର ଲୋକ ହାବେଳି ବାଣ ତିଆରି କରିବାରେ ଖୁବ୍ ଦକ୍ଷତା ଲାଭ କରିଥିଲେ । ସେମାନେ ମେଳା ମଉଚ୍ଛବରେ ଆକାଶକୁ

ହାବେଳ ବାଣ ସବୁ ଛାଡ଼ୁଥିଲେ । ନାନା ରଙ୍ଗର ଅଲୁଅ ଜାଳ ତାହା ବହୁ ଉପରକୁ ଉଠି ଯାଉଥିଲା ।



( ଚୀନ ହାବେଳ )

୧୩ଶ ଶତାବ୍ଦୀରେ ଅସଭ୍ୟ ଓ ବଲୁଆ ତାତାର ଜାତିର ଲୋକେ ଚୀନ ଦେଶ ଉପରେ ଆକ୍ରମଣ କଲେ । ଚୀନାମାନେ ହାବେଳ ଦେହରେ ମାରଣାସ୍ତ୍ର ଖଞ୍ଜି ସେମାନଙ୍କ ଉପରକୁ ପକାଇଲେ । ଫଳରେ ତାତାରମାନେ ଜୀବନ ବିକଳରେ ଚୀନ ଛାଡ଼ି ପଳାଇଲେ ।

ହାବେଳ କ୍ରମେ ଚୀନ ଦେଶରୁ ଅନ୍ୟ ଦେଶକୁ ଗଲା । ଅନ୍ୟ ଦେଶର ଲୋକମାନେ ଯୁଦ୍ଧରେ ତାକୁ ବ୍ୟବହାର କଲେ । ତେଣୁ ତାର ନାଁ ହେଲା ରଣହାବେଳ । ଶତ୍ରୁ ସୈନ୍ୟଙ୍କୁ ହଟାଇବା ପାଇଁ ଏହା ହେଲା ଏକ ଅମୋଘ ଅସ୍ତ୍ର ।



# ରଣ ହାବେଳିରୁ ରକେଟ୍‌ଯାନ

ଆମ ଦେଶରେ ମଧ୍ୟ ହାବେଳର ଲୋକପ୍ରିୟତା ବଢ଼ିଲା । ପ୍ରଥମ ପାନିପଥ ଯୁଦ୍ଧରେ ଏହାକୁ ବ୍ୟବହାର କରାଯାଇଥିଲା । ମହୀଶୂରର ବିଖ୍ୟାତ ବୀର ଟିପୁ ସୁଲତାନ ଇଂରେଜମାନଙ୍କ ବିରୁଦ୍ଧରେ ରଣ ହାବେଳକୁ ବ୍ୟବହାର କରିଥିଲେ । ଫଳରେ ୧୮ଶ ଶତାବ୍ଦୀରେ ଘଟିଥିବା ଦ୍ୱିତୀୟ ମହୀଶୂର ଯୁଦ୍ଧରେ ଇଂରେଜମାନେ ହଟିଯାଇଥିଲେ ।



( ଭାରତୀୟ ହାବେଳ )

ପରେ ବଡ଼ ବଡ଼ କମାଣ ଓ ବନ୍ଧୁକ ତିଆରି ହେଲା । ସେଥିରେ ରଣହାବେଳ ଅପେକ୍ଷା ଗୋଳା ବାରୁଦକୁ ଅଧିକ

ବେଗରେ ଦୂରକୁ ଲକ୍ଷ୍ୟ କରି ଛାଡ଼ି ଦିଆଯାଇ ପାରିଲା । ଏଥିଯୋଗୁ ରଣହାବେଲିର ବ୍ୟବହାର କମିଗଲା ।

ତା ପରେ ବିଂଶ ଶତାବ୍ଦୀର ମଝି ସମୟର କଥା । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜର୍ମାନମାନେ ୟୁରୋପର ବିଭିନ୍ନ ଦେଶ ଆକ୍ରମଣ କରି ଦଖଲ କଲେ । ଋଷର ବୈଜ୍ଞାନିକ-ମାନେ "କାତ୍ୟୁସା" ନାମକ ଏକ ରକେଟ୍‌ରେ ବହୁ ମାରଣାସ୍ତ୍ର ଖଞ୍ଜି ସେମାନଙ୍କ ଉପରକୁ ଛାଡ଼ିଲେ । ଆମେରିକା ମଧ୍ୟ "ବାଜୁକା" ନାମକ ଏକ ପ୍ରକାର ରକେଟ୍‌ରେ ଗୋଳା ବାରୁଦ ଖଞ୍ଜି ଶତ୍ରୁ ସୈନ୍ୟଙ୍କ ଉପରକୁ ପକାଇଲେ ।

କିନ୍ତୁ ଏଇ ଯୁଦ୍ଧ କାଳରେ ଜର୍ମାନମାନେ ରଣହାବେଲି ତିଆରି କରିବାରେ ସମସ୍ତଙ୍କୁ ଟପିଗଲେ । ସେମାନେ ଭି-ଟୁ ନାମକ ଏକ ଅଦ୍ଭୁତ ରକେଟ୍ ତିଆରି କଲେ । ତାର ଲମ୍ବ ଥିଲା ଚଉଦ ମିଟର ଓ ଗୋଲେଇ ଦେଢ଼ ମିଟର । ତାର ଓଜନ ଥିଲା ବାର ଟନ୍ ଏବଂ ପ୍ରାୟ ନବ୍ୟୁନବେ କିଲୋମିଟର ଉଚ୍ଚରେ ତାହା ଗତି କରି ପାରୁଥିଲା । ତାହା ଶହ ଶହ କିଲୋମିଟର ଦୂରକୁ ହଜାର ହଜାର କିଲୋଗ୍ରାମ ଓଜନର ବୋମା ବୋହି ନେଉଥିଲା । ସେଇ ରକେଟ ସାହାଯ୍ୟରେ ଜର୍ମାନମାନେ ବିଲାତର ରାଜଧାନୀ ଲଣ୍ଡନ ସହର ଉପରେ ବୋମା ପକାଇଲେ ।

ଶେଷରେ କିନ୍ତୁ ସେଇ ଯୁଦ୍ଧରେ ଜର୍ମାନମାନେ ହାରି ଗଲେ । ଋଷ ଆମେରିକା ପ୍ରଭୃତି ଦେଶର ସୈନ୍ୟମାନେ ଜର୍ମାନୀ ଦଖଲ କଲେ । ଶହ ଶହ କୁଇଣ୍ଟାଲ ଓଜନର

ରକେଟ୍ ତିଆରି ଯନ୍ତ୍ରପାତି ଓ କାଗଜପତ୍ର ନିଜ ନିଜ ଦେଶକୁ ଲୁଟିଆଣି ନେଲେ । ଫଳରେ ଋଷ ଓ ଆମେରିକାର ବୈଜ୍ଞାନିକମାନେ ଭି-୨ ରକେଟ୍ ତିଆରି କୌଶଳ ଜାଣିଗଲେ ।

ଏହି କୌଶଳ ଜାଣିଗଲା ପରେ ଋଷ ଓ ଆମେରିକାର ବୈଜ୍ଞାନିକମାନେ ମହାଶୂନ୍ୟରେ ଘୂରି ବୁଲୁଥିବା ଗ୍ରହ ଉପଗ୍ରହମାନଙ୍କୁ ଯିବା ପାଇଁ ଯୋଜନା କଲେ । ଋଷ ଦେଶର ବୈଜ୍ଞାନିକ ସିଓଲକୋଭସ୍କି "ମହାଶୂନ୍ୟରେ ରକେଟ୍" ଖଣ୍ଡିଏ ବହି ଲେଖିଲେ ।

ତା ଆଗରୁ ଥିଲେ ଆମେରିକାର ଅଧ୍ୟାପକ ଗଡାର୍ଡ୍ । ମହାଶୂନ୍ୟକୁ କିପରି ରକେଟ୍ ଛାଡ଼ିବାକୁ ହେବ ସେ ତା'ର ସୂଚନା ଦେଇଥିଲେ । ସେ ନିଜେ ମଧ୍ୟ ବିଭିନ୍ନ ଆକାର ପ୍ରକାରର ରକେଟ୍ ତିଆରି କରିଥିଲେ । ତା ସାହାଯ୍ୟରେ ଚନ୍ଦ୍ରକୁ ମଣିଷ ଯାଇପାରିବ ବୋଲି ସେ କହୁଥିଲେ ।

ମହାଶୂନ୍ୟକୁ ରକେଟ୍ ଛାଡ଼ିବା ପାଇଁ କୌଣସି କଳ ବା ଇଞ୍ଜିନ୍‌ର ଆବଶ୍ୟକତା ନ ଥିଲା । ମଣିଷ ମଧ୍ୟ ଏହାକୁ ଚଳାଇବା ପାଇଁ ଦରକାର ନ ଥିଲା । ରକେଟ୍‌ର ପଛରେ ଥାଏ ଏକ ନିଭୁଜ କୋଠରୀ । ତା ଭିତରେ ଥାଏ ଏକ ପ୍ରକାର ଗନ୍ଧକାମ୍ଳକ ଜାଳେଣି । ଏଥିରେ ନିଆଁ ଲଗାଇ ଦେଲେ ଏହା ଜଳିବାକୁ ଲାଗେ ।

ଭୁସ୍ ଭୁସ୍ ଜଳିଲାମାତ୍ରେ ନିଭୁଜ କୋଠରୀଟାରେ ପ୍ରଚୁର ଗରମ ବାଷ୍ପ ଭର୍ତ୍ତି ହୋଇଯାଏ । ତେଣୁ ତା'ର ଗୁପ

ଖୁବ୍ ବଢ଼ିଯାଏ । ସେଇ କୋଠରୀର ଏକ ଛୋଟ ଛିଦ୍ର ବାଟ ଦେଇ ଯେତେବେଳେ ପ୍ରବଳ ବେଗରେ ଏଇ ଗରମ ବାଷ୍ପ ବାହାରି ଆସେ ରକେଟ୍ ଠେଲି ହୋଇ ବିଜୁଳି ବେଗରେ ଆଗକୁ ଉଡ଼ି ଚାଲେ ।

ଅଦ୍ଭୁତ ବେଗରେ ରକେଟ୍ ଛୁଟିଲା ବେଳେ ବାୟୁ ମଣ୍ଡଳରେ ଖୁବ୍ ଘଷି ହୋଇଯାଏ । ଫଳରେ ତାହା ଖୁବ ତାତି ଲାଲ ହୋଇଯାଏ ଉଡ଼ ନିଆଁ ପରି । ତେଣୁ ତାକୁ ଏମିତି ଭାବରେ ଏଭଳି ପଦାର୍ଥରେ ଗଢ଼ିବାକୁ ହୁଏ ଯାହା ଦ୍ୱାରା ରକେଟ୍ ଘଷି ହୋଇ ନିଆଁ ପରି ତାତି ଲାଲ ହୋଇଗଲେବି ପୋଡ଼ିଯାଏ ନାହିଁ ।

ଆମେରିକା ଓ ଋଷର ବୈଜ୍ଞାନିକମାନେ ନୂଆ ନୂଆ ପ୍ରକାର ରକେଟ୍ ତିଆରି କଲେ । ମହାଶୂନ୍ୟକୁ ଯିବା ପାଇଁ ଗୋଟିକ ଉପରେ ଗୋଟିଏ ତିନୋଟି ରକେଟ୍ ଥୁର ଥୁର ଖଞ୍ଜି ଦେଲେ । ପ୍ରଥମ ରକେଟ୍‌ଟି ଜଳିବା ପରେ ସବୁ ଯନ୍ତ୍ରପାତି ଥିବା କୃତ୍ରିମ ଉପଗ୍ରହଟି ଧରି ଉପରକୁ ଉଠେ । କିଛି ବାଟ ଯିବା ପରେ ଏହି ରକେଟ୍‌ର ଜାଳେଣି ସରିଯାଏ । ତା ପରେ ଏହା ତଳକୁ ଖସିପଡ଼େ ।

ରକେଟ୍‌ର ଓଜନ କମିଯାଏ ଆଉ ଦ୍ୱିତୀୟ ରକେଟ୍ ଜଳି ଉଠି କିଛି ବାଟ ଟାଣିନିଏ । ଦ୍ୱିତୀୟ ରକେଟ୍‌ର ଜାଳେଣି ସରିଗଲେ ତାହା ତଳକୁ ଖସିପଡ଼େ । ଏବେ ତୃତୀୟ ରକେଟ୍ କାମ କରିଥାଏ । ମାତ୍ର ପୂର୍ବରୁ ଦୁଇଟି ରକେଟ୍ ପୋଡ଼ିଯାଇ ଛଳେ ପଡ଼ିବାରୁ ଏହା କମ୍ ଜାଳେଣି ଖର୍ଚ୍ଚରେ ବେଶୀ ବାଟକୁ ଟାଣିନିଏ । ଏହାର ଗତି ମଧ୍ୟ ବଢ଼ିଯାଏ । ଫଳରେ

ଏହା ପୃଥିବୀର ମାଧ୍ୟାକର୍ଷଣ ଶକ୍ତିକୁ ସହଜରେ ଅତିକ୍ରମ କରିଯାଏ । ମହାଶୂନ୍ୟରେ ଉପଗ୍ରହକୁ ଛାଡ଼ିଦ... ।




( ରକେଟ୍ ସହିତ ଆପୋଲୋ ଯାନ )

# ଋଷ ସାଥିରେ ଆମେରିକାର ବାଜି

( ୧ )

ରକେଟ୍ ସାହାଯ୍ୟରେ ମହାଶୂନ୍ୟକୁ କୃତ୍ରିମ ଉପଗ୍ରହ ପଠାଇବାର ଚେଷ୍ଟା ଚାଲିଛି । ପ୍ରଥମେ ଋଷ ଦେଶ ଏ ଦିଗରେ ବାଟ ଦେଖାଇଲା । ଅପୂର୍ବ ସଫଳତା ଲାଭ କଲା ।

ଆମେ ଜାଣୁ ଚନ୍ଦ୍ର ଆମ ପୃଥିବୀର ଗୋଟିଏ ପ୍ରାକୃତିକ ଉପଗ୍ରହ । ଏହା ପୃଥିବୀର ଚଉଦିଗରେ ଘୂରି ବୁଲେ ।



( ସ୍ପୁଟ୍ନିକ ଉପଗ୍ରହ )

ସେମିତି କୃତ୍ରିମ ଉପଗ୍ରହ ମଣିଷ ତିଆରି କରି ରକେଟ୍ ସାହାଯ୍ୟରେ ଉପରକୁ ପଠାଏ । ଏହା ମଧ୍ୟ ପୃଥିବୀର ଚାରିପଟେ ଘୂରେ ।

୧୯୫୭ ମସିହା ଅକ୍ଟୋବର ୪ ତାରିଖରେ ପ୍ରଥମେ ଋଷ ତାର କୃତ୍ରିମ ସ୍ପୁଟ୍‌ନିକ୍-୧କୁ ମହାକାଶକୁ ଛାଡ଼ିଥିଲା । ଏହା ପୃଥିବୀର ଗୋଟିଏ ଉପଗ୍ରହ ଭାବରେ ବୁଲି ବାୟୁର ଚାପ, ଉତ୍ତାପ ଆଦି ନାନା ପ୍ରକାର ତଥ୍ୟ ସଂଗ୍ରହ କରିଥିଲା । ଏଥିପାଇଁ ଏହି ଉପଗ୍ରହରେ ବହୁ ବୈଜ୍ଞାନିକ ଯନ୍ତ୍ରପାତି ଖଞ୍ଜା ଯାଇଥିଲା ।

ତା ପରେ ସେହି ବର୍ଷ ନଭେମ୍ବର ୩ ତାରିଖ । ଋଷ ତାର ଦ୍ୱିତୀୟ ସ୍ପୁଟ୍‌ନିକରେ ଲାଇକା ନାମକ ଏକ କୁକୁର ମହାକାଶକୁ ପଠାଇଥିଲା । ମହାଶୂନ୍ୟରୁ ଫେରିବା ପରେ



( ମହାକାଶଯାନରେ ଲାଇକା )

ଲାଇକା ମରିଗଲା । ହେଲେ ବୈଜ୍ଞାନିମାନଙ୍କ ଜୀବନ ଉପରେ ମହାକାଶରେ ପ୍ରଭାବ ସମ୍ପର୍କରେ ବହୁ ଦରକାରୀ ତଥ୍ୟ ଯୋଗାଇଥିଲା ।

ଋଷର ଏପରି ସଫଳତାରେ ଆମେରିକା ବ୍ୟସ୍ତ ହୋଇ ପଡ଼ିଲା । ତାର ବୈଜ୍ଞାନିକମାନେ ପୂର୍ଣ୍ଣ ଦମ୍‌ରେ ଏ ଦିଗରେ ଲାଗି ପଡ଼ିଲେ । ୧୯୫୮ ମସିହା ଜାନୁୟାରୀ ମାସ ୩୧ ତାରିଖରେ ଆମେରିକା ତାର ପ୍ରଥମ କୃତ୍ରିମ ଉପଗ୍ରହକୁ ମହାକାଶକୁ ପଠାଇଲା ।

ମାତ୍ର ଋଷ/୧୯୫୯ ସେପ୍‌ଟେମ୍ବର ୧୩ ତାରିଖରେ ଲୁନା-୧କୁ ଚନ୍ଦ୍ରରାଇଜଂକୁ ପଠାଇବାରେ ସଫଳ ହୋଇଥିଲା । ଏହି ଯାନଟି ଚନ୍ଦ୍ର ଉପରେ ଓହ୍ଲାଇଥିଲା । ଋଷର ଜାତୀୟ ପତାକାକୁ ସେଠାରେ ଉଡ଼ାଇ ପାରିଥିଲା । ଆମେରିକା ଏତିକବେଳେ ମହାକାଶକୁ କୃତ୍ରିମ ଉପଗ୍ରହ ପଠାଇବାରେ ପ୍ରାଣମୂର୍ଚ୍ଛା ଲାଗି ପଡ଼ିଥିଲା ।

ମହାକାଶକୁ ମଣିଷ ପଠାଇବାରେ ପ୍ରଥମେ ଋଷ ସଫଳ ହୋଇଥିଲା । ସାରା ଜଗତକୁ ଚକିତ କରି ଦେଇଥିଲା । ଋଷର ୟୁରି ଗାଗାରିନ ହେଲେ ପୃଥିବୀର ପ୍ରଥମ ମହାଶୂନ୍ୟଯାତ୍ରୀ । ସେ ୧୯୬୧ ଏପ୍ରିଲ୍ ୧୨ ତାରିଖରେ ମହାକାଶକୁ ଯାଇଥିଲେ । ରକେଟ ଚାଳିତ ଭୋଷ୍ଟକ-୧ ପୂର୍ବଦିଗ ସାହାଯ୍ୟରେ ଏହା ସମ୍ଭବ ହୋଇଥିଲା । ସେ ମହାକାଶରେ ୧୦୮ ମିନଟ କାଳ କଟାଇ ପୃଥିବୀର ଚାରିପଟେ ବୁଲିଥିଲେ ।

ଗାଗାରିନଙ୍କ ନିଜ ଭାଷାରେ ତାଙ୍କର ଅନୁଭୂତି ଆମଙ୍କୁ ଜଣାଇଛନ୍ତି ।



( ଗାଗାରିନ୍ )

—ମହାକାଶକୁ ଯିବା ସମୟ ପାଖେଇ ଆସିଲା । ମୁଁ ବ୍ୟସ୍ତ ହୋଇ ପଡ଼ିଲି । ମୋତେ ଯେଉଁ ଯାନ ନେଇଯିବାର କଥା ତାର ନାଁ ଥିଲା ଭୋଷ୍ଟକ । ଋଷ ଭାଷାରେ ତାର ଅର୍ଥ ହେଲା ପୂର୍ବଦିଗ । ସୂର୍ଯ୍ୟ ପୂର୍ବଦିଗରେ ଉଇଁ ଉଜ୍ଜଳ ଆଲୋକରେ ଅନ୍ଧକାରକୁ ଦୂର କରି ଦିଏ ।

—ମୁଁ ଏଇ ଯାନ ଭିତରକୁ ଯିବା ପୂର୍ବରୁ ରେଡ଼ିଓ ଓ ପ୍ରେସକୁ ଗୋଟିଏ ବିବୃତ୍ତି ଦେଇଥିଲି । ତାହା ହେଲା —

ସବୁ ଦେଶରେ ମୋର ଜଣା ଅଜଣା ବନ୍ଧୁଗଣ । କେତୋଟି ମିନିଟରେ ମହାକାଶ ଯାନଟି ମୋତେ ବିଶ୍ୱର ବହୁ ଦୂରକୁ ନେଇଯିବ । ଏମନ୍ତ ବେଳରେ ମୁଁ କଣ ବା କହିପାରିବି ? ସାରା ଜୀବନଟି ମୋତେ ଗୋଟିଏ ସୁନ୍ଦର ମୁହୂର୍ତ୍ତ ପରି ଲାଗୁଛି ।

—ମଣିଷ ଜାତି ଯେଉଁ କାମ କରିବାକୁ ଯୁଗ ଯୁଗ ଧରି ସ୍ୱପ୍ନ ଦେଖିଥିଲା, ମୁଁ ଆଜି ସେଇ କାମଟି କରିବାକୁ ଯାଉଛି । କେଡ଼େ କଠିନ ଏ କାମ ! କେତେ ବଡ଼ ଦାୟିତ୍ୱ !!



( ମହାଶୂନ୍ୟରୁ ପୃଥିବୀର ଦୃଶ୍ୟ )

ମୁଁ ମହାକାଶ ଯାନ ଭିତରକୁ ପଶିଯିବା ମାତ୍ରେ କିଛି ଶବ୍ଦ ନ କରି ଛୋଟ ଦୁଆରଟି ହଠାତ୍ ବନ୍ଦ ହୋଇଗଲା

ଏଣିକି ମୁଁ କେବଳ ରେଡ଼ିଓରେ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରିପାରିଲି, ତାପରେ ମୋର ଯାନ ଥରି ଉଠିଲା । ଖୁବ୍ ଶବ୍ଦ କରି ଉପରକୁ ଉଠିଲା ।

—ମୋ ଉପରେ ଗୋଟିଏ ଚାପ ପଡ଼ିବା ପରି ଲାଗିଲା । ମୋର ଆସନ ଆଉ ପୋଷାକ ଏଇ ଚାପ ସମ୍ଭାଳିବାକୁ ପ୍ରସ୍ତୁତ କରାଯାଇଥିଲା । ତେବେ ମୁଁ ମୋ ଗୋଡ଼ ହାତ ଉଠାଇବା କଷ୍ଟକର ହେଲା ଅବଶ୍ୟ ମୁଁ ଜାଣିଥିଲି ମୋର ଏଇ ଅବସ୍ଥା ବେଶି ସମୟ ରହିବ ନାହିଁ ।

—ଘନ ବାୟୁମଣ୍ଡଳରୁ ବାହାରିଲା ମାତ୍ରେ ଏଇ ଅବସ୍ଥା ବଦଳିଗଲା । ଦୂରରୁ ପୃଥିବୀର ରୂପ କେତେ ସୁନ୍ଦର ଦେଖାଗଲା । ବଡ଼ ବଡ଼ ନଦୀ, ପାହାଡ଼, ସବୁଜ ସମତଳ ଅଞ୍ଚଳ, ଉଜ୍ଜ୍ୱଳ ସୂର୍ଯ୍ୟ କିରଣରେ ଆଲୋକିତ ଶସ୍ୟକ୍ଷେତ୍ର-ମାନ ସ୍ପଷ୍ଟ ଭାବରେ ଦେଖି ପାରିଲି । ମୁଁ ହଠାତ୍ ପାଟି କରି ଉଠିଲି "ସତେ କି ସୁନ୍ଦର !"

—ମହାକାଶଯାନଟି ତାର କକ୍ଷ ପଥରେ ଘୂରି-ବୁଲିଲା । ମୋର କିଛି ଓଜନ ନ ଥିଲା ପରି ଲାଗିଲା । ପ୍ରଥମେ ମୋତେ ଟିକିଏ ଅସ୍ୱସ୍ତି କରି ଲାଗିଲା ତା ପରେ ମୁଁ ଏଥିରେ ଅଭ୍ୟସ୍ତ ହୋଇଗଲି ।

ଭୋଷ୍ଟକ ଯାନଟି ଘଣ୍ଟାକୁ ପ୍ରାୟ ୨୮ ହଜାର



( ଭୋଷ୍ଟକ )

କିଲୋମିଟର ବେଗରେ ଘୂରି ବୁଲୁଥିଲା। ଏହି ବେଗକୁ ତୁମେ ସହଜରେ ଅନୁମାନ କରିପାରିବ ନାହିଁ।

—ଯାନଟିରେ ଲାଗିଥିବା ଯନ୍ତ୍ରପାତି ସବୁ ଆପେ ଆପେ କାର୍ଯ୍ୟ କରି ଚାଲିଲା। ମୁଁ ମଧ୍ୟ ସେ ସବୁକୁ ପରୀକ୍ଷା କଲି। ଦେଖିଲି ସବୁ ସୁରୁଖୁରୁରେ ଚାଲିଛି। ଏବେ ବେଳ ହୋଇଗଲା। ତଳକୁ ଖସିବାକୁ ହେବ।

—କ୍ରମେ ଯାନଟିର ବେଗ କମିଗଲା। ଏହା ବାୟୁମଣ୍ଡଳର ବହଳ ସ୍ତର ମଧ୍ୟ ଦେଇ ଖସିବା ପର

ଉଣାପଡ଼ିଲା । ଏହାର ବାହାରଟା ଖୁବ୍ ତାତିଯାଇ ଲାଲ ଟହ ଟହ ଦେଖାଗଲା । କିନ୍ତୁ ଭିତର କି ଥଣ୍ଡା !

—ପୃଥିବୀ ଅଡ଼କୁ ନଅ ହଜାଟିଏ ପରେ ଭୋଷ୍ଟକ ଯାନଟି ଖସିଲା । ମୋ ଦେହର ଓଜନ ବଢ଼ିବାରେ ଲାଗିଲା । ଚାପ ମଧ୍ୟ ବଢ଼ିଲା । ଏମିତିକି ଉପରକୁ ଯିବା ବେଳଠାରୁ ଓହ୍ଲାଇଲା ବେଳେ ଏହା ଅଧିକ ବୋଧ ହେଲା । ଯାନଟି ଘୂରିବାରୁ ମୁଁ ବ୍ୟସ୍ତ ହୋଇ ପଡ଼ିଲି । ମାତ୍ର ଶୀଘ୍ର ଠିକ୍ ହୋଇଗଲା ।

—ଭୋଷ୍ଟକ ଅସ୍ତେ ଅସ୍ତେ ପୃଥିବୀ ଉପରକୁ ଖସିଲା । ମୁଁ ନିର୍ଦ୍ଦିଷ୍ଟ ସ୍ଥାନରେ ନିରାପଦରେ ଓହ୍ଲାଇଲି ।

ଗାଗାରିନ୍ଙ୍କର ଏହି ସଫଳତାର କାହାଣୀ ସାରା ପୃଥିବୀରେ ଚମକ ସୃଷ୍ଟି କରି ଦେଲା । ମହାକାଶ ଯାତ୍ରା ପାଇଁ ମନୁଷ୍ୟକୁ ନୂଆ ବଳ ଆଉ ସାହସ ଯୋଗାଇଲା ।



# ଋଷ ସାଥିରେ ଆମେରିକାର ବାଜି

( ୨ )

ସେହି ବର୍ଷ (୧୯୬୧) ଆମେରିକାର ପ୍ରଥମ ମହାକାଶ ଯାତ୍ରୀ ଅଲ୍ଲାନ୍ ସେପାର୍ଡ଼ ମହାଶୂନ୍ୟକୁ ଉଠିଥିଲେ ଆଉ ସେଠାରେ ୧୬ ମିନିଟ୍ କାଳ କଟାଇ ତଳକୁ ଆସିଥିଲେ । ତା ପରବର୍ଷ ଜୁଲାଇ ମାସରେ ଆଉ ଜଣେ ମାର୍କିନ୍ ମହାକାଶଚାରୀ ମହାଶୂନ୍ୟକୁ ଯାଇ ୧୫ ମିନିଟ୍ ମଧ୍ୟରେ ପୃଥିବୀକୁ ଫେରି ଆସିଥିଲେ ।

୧୯୬୧ ଅଗଷ୍ଟ ୬ ତାରିଖରେ ଋଷର କେମିନ୍ ତିତଭ ଭୋଷ୍ଟକ-୨ ଯାନରେ ମହାଶୂନ୍ୟକୁ ଯାଇଥିଲେ । ସେଠାରେ ସେ ୨୫ ଘଣ୍ଟା ରହି ଅନେକ କାର୍ଯ୍ୟ କରିଥିଲେ । ଶୋଇଥିଲେ ଆଉ ବିଶ୍ରାମ ନେଇଥିଲେ । ପୃଥିବୀର କକ୍ଷ ପଥରେ ସେ ଯାନଟି ଚଳାଇଥିଲେ । ନାନା ପ୍ରକାର ପରୀକ୍ଷା ନିରୀକ୍ଷା କରିଥିଲେ । ଗୋଟିଏ ଫିଲମ ମଧ୍ୟ ସେ ଉଠାଇ ପାରିଥିଲେ ।

୧୯୬୨ ମସିହାରେ ମାର୍କିନ ମହାକାଶଚାରୀମାନେ ମହାଶୂନ୍ୟକୁ ଯାତ୍ରା କରିଥିଲେ । ପୃଥିବୀକୁ ପରିକ୍ରମା କରିବା ସଙ୍ଗେ ସଙ୍ଗେ ସେମାନେ ନିଜେ ମଝିରେ ମଝିରେ ଯାନଟିକୁ

ଚଳାଇଥିଲେ । ସେଇ ବର୍ଷ ଦୁଇଜଣ ଋଷ ମହାକାଶଚାରୀ ଅଗପଛ ହୋଇ ଦୁଇଟି ଯାନରେ ଯାଇ ପାଖାପାଖି ବୁଲିଥିଲେ । ପରସ୍ପର କଥାବାର୍ତ୍ତା ହୋଇଥିଲେ ।

ଏମିତି ଋଷ ଓ ଆମେରିକା ମଧ୍ୟରେ ପ୍ରତିଯୋଗିତା ଚାଲିଲା । କାଣ ଗବେଷଣି ପର ମହାକାଶ ଯାତ୍ରାରେ ସେମାନଙ୍କର ବାଦ ଲାଗିଥିଲା । ଅବଶ୍ୟ ଏହା ମଣିଷକୁ ସାହାଯ୍ୟ କରିଥିଲା । ମହାଶୂନ୍ୟରେ କିପରି କଲ୍ପପଦରେ ଯାତ୍ରା କରିପାରିବ ତାର ବାଟ ବତାଇଥିଲା ।



( ଭାଲେନ୍ତିନା ତେରେସ୍କୋଭା )

୧୯୬୩ ଜୁନ୍ ମାସରେ ଭୋଷ୍ଟକ-୬ ଯାନରେ ପ୍ରଥମ ମହିଳା ମହାକାଶଚାରୀ ଭାଲେନ୍ତିନା ତେରେସ୍କୋଭା ମହାକାଶକୁ ଯାଇଥିଲେ । ତା ପୂର୍ବରୁ ଭୋଷ୍ଟକ-୫ର

ମହାକାଶକୁ ଭାଲେରୀ ବାଇକୋଭସ୍କି ଯାଇଥିଲେ । ଭାଲେଣ୍ଟିନାଙ୍କ ଦ୍ୱାରା ମହାଶୂନ୍ୟରେ ନାନା ପ୍ରକାର ପରୀକ୍ଷା ନିରୀକ୍ଷା ହୋଇଥିଲା । ପୃଥିବୀ କକ୍ଷରେ ୪୯ ଥର ପରିକ୍ରମା କରି ଶୂନ୍ୟ ଯାନଟିର ଯାତ୍ରୀ ଭାଲେରୀଙ୍କ ସହିତ କଥାବାର୍ତ୍ତା କରିଥିଲେ ।

୧୯୬୪ ମସିହା ଅକ୍ଟୋବର ମାସରେ ଋଷର ଟିଓ୍ଟୋଭ ଓ ଇୟେଗୋରଭ ଓ କେଷାମରୋଭ ନାମକ ତିନଜଣ ମହାକାଶ ଯାତ୍ରୀ ଗୋଟିଏ ଯାନରେ ମହାଶୂନ୍ୟକୁ ଯାତ୍ରା କରିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ଡାକ୍ତର ଥିଲେ । ସେମାନେ ପ୍ରାୟ ୨୪ ଘଣ୍ଟା କାଳ ମହାକାଶରେ ବିଚରଣ ପୃଥିବୀକୁ ଫେରିଥିଲେ ।

୧୯୬୫ ମସିହାରେ ପାଭେଲ ସେତେବେଳେ ପୃଥିବୀକୁ ବେତାର ଖବର ଦେଇ କହିଥିଲେ—ଏଇ ସେ ଆଲେକ୍ସ ! ମଣିଷ ମହାକାଶରେ ପାଦ ଦେଲା ! ଦେଖ, କେମିତି ଜାପର ମଉକରେ ମହାକାଶରେ ଯାଉଛି ବୁଲୁଛି ! ସେ ଗୋଟିଏ ବଡ଼ ବାଧାକୁ ଆଜି ଟଗୋଡ଼ରେ ଦଳିଦେଲା ସତେ !

ସେଇ ବର୍ଷ ମାର୍ଚ୍ଚ ମାସରେ ଋଷର ପାଭେଲ୍-ଭେଲ୍ୟେଭ ଓ ଆଲେକ୍‌ସିସ୍ ଲିଓନଭ ଗୋଟିଏ ଯାନରେ ମହାଶୂନ୍ୟକୁ ଯାଇଥିଲେ । ସେମାନେ ପୃଥିବୀକୁ ୧୭ ଥର ପ୍ରଦକ୍ଷିଣ କରିଥିଲେ । ଏହାଛଡ଼ା ଲିଓନଭ୍ ମହାକାଶ ଯାନରୁ

ତାହାର ମହାଶୂନ୍ୟରେ ୧୦ ମିନଟ୍ କାଳ ବୁଲିଥିଲେ । ଦଉଡ଼ିଟେ ଧରି ପାଣିରେ ପହଁରିଲା ପରି ମହାକାଶରେ



(ମହାଶୂନ୍ୟରେ ହ୍ୱାଇଟ୍‌ଙ୍କର ପହଁରା )

ବିଚରଣ କରିଥିଲେ । ଯାନରେ ଲାଗିଥିବା ଏକମାତ୍ର ଫିତା ଧରି ସେ ଶୂନ୍ୟରେ ପହଁରିଥିଲେ ।

ସେହିବର୍ଷ ଆମେରିକା ମହାକାଶଚାରୀମାନେ ମଧ୍ୟ ଦୁଇ ତିନି ଥର ମହାଶୂନ୍ୟକୁ ଯାଇଥିଲେ । ବହୁଥର ପୃଥିବୀ ପରିକ୍ରମା କରି କେତେକ ପରୀକ୍ଷା ନିରୀକ୍ଷା କରିଥିଲେ । ସେମାନେ ମହାଶୂନ୍ୟରେ ଦୁଇଟି ଯାନକୁ ଏକାଠି ଯୋଡ଼ି

ପାଉଥିଲେ । ଏଡ଼ୱାର୍ଡ଼ ହ୍ୱାଇଟ୍ ନାମକ ଜଣେ ମାର୍କିନ୍



( ଦୁଇଟି ଯାନର ଯୋଗାଯୋଗ )

ମହାକାଶଚାରୀ ନିଜ ଯାନରୁ ବାହାରି ଯେମିତି ମହାଶୂନ୍ୟରେ ବୁଲୁଥିଲେ । ଏହାଥିଲା ମହାକାଶରେ ମଣିଷର ପିଲାଖେଳ !



# ଆ' ଜହ୍ନମାମୁଁ ସରଗ ଶଶୀ

୧୯୬୬ ଫେବୃୟାରୀ ୩ ତାରିଖର କଥା । ଋଷ ଗୋଟିଏ ମହାକାଶ ଯାନକୁ ଚନ୍ଦ୍ରକୁ ପଠାଇବାରେ ସଫଳ ହେଲା । ଏହି ଯାନ ଥିଲା ଲୁନା-୯ । ତାହା ଧୀରେ ଧୀରେ ଚନ୍ଦ୍ର ଉପରେ ଓହ୍ଲାଇ ଥିଲା । ଚନ୍ଦ୍ର ଉପରର ନାନା ଫଟୋ ଉଠାଇଥିଲା । ସେସବୁ ଫଟୋ ପୃଥିବୀକୁ ମଧ୍ୟ ପଠାଇଥିଲା । ଏହା ସତେ କମ୍ ଆଶ୍ଚର୍ଯ୍ୟର କଥା ?

ଏହା ପରେ ଆମେରିକାର ମହାକାଶ ଯାତ୍ରୀମାନେ ଅନେକଥର ଚନ୍ଦ୍ର ପାଖକୁ ଯାଇ ତାର ଅବସ୍ଥାକୁ ଲକ୍ଷ୍ୟ କରିଥିଲେ । ସେତେବେଳେ ସେମାନେ ଯେଉଁ ଯାନକୁ ଏଥିପାଇଁ ବ୍ୟବହାର କରୁଥିଲେ, ତାର ନାମ ଜେମିନି ।

୧୯୬୭ ମସିହା ସେପ୍ଟେମ୍ବର ମାସରୁ ଆମେରିକା ଆଉ ଏକ ନୂତନ ଧରଣର ମହାକାଶ ଯାନ ବ୍ୟବହାର କଲା । ତାର ନାମ ହେଲା ଆପୋଲୋ । ଏହା ସାହାଯ୍ୟରେ ମଣିଷ ମହାଶୂନ୍ୟରେ ବୁଲିଲା । ଚନ୍ଦ୍ର ଦେଶରେ ମଧ୍ୟ ପାଦ ଦେଇ ପାରିଲା ।

୧୯୬୯ ମସିହା ମାର୍ଚ୍ଚ ମାସ । ଆମେରିକାର ତିନିଜଣ ମହାକାଶଯାତ୍ରୀ ଜେମ୍ସମ୍ୟାକ୍, ଡେଭିଡ୍ସ୍କଟ୍ ଓ ସୋଆଇକର୍ଟ୍

ଆପୋଲୋ-୯ ମହାଶୂନ୍ୟକୁ ଯାଇଥିଲେ । ସେଠାରେ ସେ ନିଜ ଯାନ ସହିତ ଏକ ଚନ୍ଦ୍ରଯାନକୁ ଯୋଡି ଦେଇଥିଲେ ।

ସେମାନେ ମହାଶୂନ୍ୟରେ ୨ ଘଣ୍ଟା ରହିଥିଲେ । ଆପୋଲୋ ଯାନରୁ ଚନ୍ଦ୍ରଯାନ ଓ ଚନ୍ଦ୍ରଯାନରୁ ଆପୋଲୋ-୯କୁ ଯିବା ଆସିବା କରିଥିଲେ । ମହାକାଶ ଯାତ୍ରୀମାନେ ଚନ୍ଦ୍ରଠାରୁ ମାତ୍ର ୧୫ କିଲୋମିଟର ଦୂରକୁ ଯାଇଥିଲେ । ମନୁଷ୍ୟ କେଉଁ ସ୍ଥାନରେ ଓହ୍ଲାଇ ପାରିବ, ତାହା ଠିକ୍ କରିଥିଲେ ।

ସେହି ବର୍ଷ ଅପୋଲୋ-୧୦ ଚନ୍ଦ୍ରର ଅତି ନିକଟକୁ ଯାଇଥିଲା । ନିରାପଦରେ ତାହା ପୃଥିବୀକୁ ଫେରି ଆସିଥିଲା । ଏମିତି ଆପୋଲୋ ଯାନରେ ମହାଶୂନ୍ୟକୁ ବାରମ୍ବାର ଯିବା ଆସିବା କରି ଆଉ ଅଧିକରୁ ଅଧିକ ଚନ୍ଦ୍ର ପାଖକୁ ଯାଇ ତାର ଅବସ୍ଥା ସମ୍ପର୍କରେ ମନୁଷ୍ୟ ବହୁ ଅନୁଭୂତି ଲାଭ କରିଥିଲା । ଏହି ସବୁ ଅନୁଭୂତି ପରେ ଚନ୍ଦ୍ର ଦେଶକୁ ଯିବା ପାଇଁ ମନୁଷ୍ୟର ଖୁବ୍ ସହାୟକ ହୋଇଥିଲା ।

୧୯୬୯ ମସିହା ଜୁଲାଇ ୧୬ ତାରିଖ । ମଣିଷ ଜାତିର ଇତିହାସରେ ଏକ ମନେ ରଖିବାର ଦିନ । ଚନ୍ଦ୍ରକୁ ଯିବା ପାଇଁ ମନୁଷ୍ୟର ବହୁଦିନର ଆଶା ସେଦିନ ପୂରଣ ହୋଇ

ପାଣିଥିଲି । ସେ ଦିନ ଆମେରିକାର ତିନିଜଣ ମହାକାଶଯାତ୍ରୀ



( ଆର୍ମଷ୍ଟ୍ରଙ୍ଗ, କଲିନ୍‌ସ, ଆଲଡ୍ରିନ୍ )

ନେଇଲ୍ ଏ. ଆର୍ମଷ୍ଟ୍ରଙ୍ଗ, ମାଇକେଲ କଲିନ୍‌ସ ଓ ଏଡ୍‌ଇନ୍ ଇ. ଆଲଡ୍ରିନ୍ ଆପୋଲୋ-୧୧ ମହାକାଶଯାନରେ ଚନ୍ଦ୍ର-ଦେଶକୁ ଯାତ୍ରା କଲେ ।

ଏଇ ତିନିଜଣ ମହାକାଶଚାରୀଙ୍କ ସ୍ୱାସ୍ଥ୍ୟ ଭଲ ଥିଲା ବୋଲି ପରୀକ୍ଷାରୁ ଜଣାଯାଇଥିଲା । ସେମାନଙ୍କ ପାଇଁ ଏକ ଅଲଗା ପ୍ରକାର ପୋଷାକ ତିଆରି କରାଗଲା । ଏଇ ପୋଷାକ ସବୁଠୁଁ ମୂଲ୍ୟବାନ୍ । ତାର ଦାମ୍ ଥିଲା ପ୍ରାୟ ୧୫ ଲକ୍ଷ ଟଙ୍କା । ପ୍ରତ୍ୟେକ ପୋଷାକର ଓଜନ ଥିଲା ୧୭ କିଲୋଗ୍ରାମ୍ ।

ଗୋଟିଏ ଖୁବ୍ ଶକ୍ତିଶାଳୀ ରକେଟ ସାହାଯ୍ୟରେ ଆପୋଲୋ-୧୧କୁ ମହାଶୂନ୍ୟକୁ ପଠାଗଲା । ଏହା ଭୀଷଣ

ଗର୍ଜନ କରି ମହାକାଶକୁ ଉଠିଯାଇଥିଲା । ଏହା ସହିତ ଗୋଟିଏ ଚନ୍ଦ୍ରଯାନ ଯୋଡ଼ା ଯାଇଥିଲା ।



( ଅପୋଲୋ-୧୧ )

ଲକ୍ଷ ଲକ୍ଷ ଲୋକ କେପ୍ କେନେଡ଼ି ମହାକାଶ କେନ୍ଦ୍ର ଠାରେ ରୁଣ୍ଡ ହୋଇଥିଲେ ଏହି ଦୃଶ୍ୟ ଦେଖିବାକୁ ଟେଲିଭିଜନରେ ମଧ୍ୟ ଦେଶ ବିଦେଶର ଅନ୍ୟୁନ ୫୩ କୋଟି ଲୋକ ଏହା ଦେଖିଥିଲେ । ଏହି ଯାତ୍ରାରେ ଅନେକ ବିପଦର ଭୟ ଥିଲା । ମାତ୍ର ମହାକାଶ ଯାତ୍ରୀମାନଙ୍କୁ ଏ ସବୁ ଅଜଣା ନ ଥିଲା । ସେମାନେ ଏହା ଜାଣି ସେଥିପାଇଁ ନିଜକୁ ପ୍ରସ୍ତୁତ କରିଥିଲେ ।

ମାଟିମାଆକୁ ଛାଡ଼ିବାର ଅଢ଼େଇ ଘଣ୍ଟା ପରେ ମହାକାଶ ଯାନଟି ପୃଥିବୀ କକ୍ଷ ପଥରେ ପହଞ୍ଚିଲା । ତା'ପରେ ଯାନଟି ଆଗେଇ ଚାଲିଲା ଅଉ ଚନ୍ଦ୍ରର କକ୍ଷ ପଥରେ ରହିଲା । ସେତେବେଳେ ଚନ୍ଦ୍ରଯାତ୍ରୀମାନଙ୍କର ମନରେ ଆନନ୍ଦର ଲହରୀ ଖେଳିଗଲା ।

ଜୁଲାଇ ୨୦ ତାରିଖ ଦିନ ଆର୍ମଷ୍ଟ୍ରଙ୍ଗ ଓ ଆଲଡ୍ରିନ୍ ଚନ୍ଦ୍ରଯାନ ଇଗଲ୍‌ରେ ଚନ୍ଦ୍ର ଆଡ଼କୁ ଗତି କଲେ । ସେଦିନ ରାତି ପ୍ରାୟ ୨ଟା ସମୟରେ ଚନ୍ଦ୍ରଯାନଟି ଚନ୍ଦ୍ରଦେଶରେ ଓହ୍ଲାଇଲା । ମହାକାଶ ଯାତ୍ରୀମାନେ ସର୍ବଦା କେପ୍ କେନେଡ଼ି ମହାକାଶ କେନ୍ଦ୍ରର କର୍ମଚାରୀମାନଙ୍କ ସହିତ କଥାବାର୍ତ୍ତା କରୁଥିଲେ । ମାତ୍ର ଚନ୍ଦ୍ରଦେଶରେ ସେମାନଙ୍କର ଅବିକଳ କଣ୍ଠସ୍ୱର ଶୁଣି ସମସ୍ତେ ଆନନ୍ଦରେ ଅଧୀର ହୋଇ ପଡ଼ିଥିଲେ ।

ଚନ୍ଦ୍ରଯାତ୍ରୀ ଦୁହେଁ ଚନ୍ଦ୍ରଯାନରେ ଥାଇ ପ୍ରାୟ ୬ ଘଣ୍ଟା ବିଶ୍ରାମ କଲେ । ୨୧ ତାରିଖ ସକାଳ ସାଢ଼େ ୮ଟାରେ ଆର୍ମଷ୍ଟ୍ରଙ୍ଗ ପ୍ରଥମେ ଗୋଟିଏ ସିଡ଼ିରେ ଚନ୍ଦ୍ରଯାନରୁ ଓହ୍ଲାଇଲେ । ଚନ୍ଦ୍ରଦେଶରେ ନିଜର ବାମ ପାଦଟି ଆଗେ ରଖିଥିଲେ । ତାଙ୍କର ବହୁଦିନର ସ୍ୱପ୍ନଟି ସତ ହେଲା । ମଣିଷର ଅସମ୍ଭବ କଥାଟି ସମ୍ଭବ ହେଲା ।

ଅବୁଝା ପିଲାକୁ ବୁଝାଇବାକୁ ମାଆ ଜହ୍ନମାମୁଁଙ୍କୁ ଦେଖାଇ କହୁଥିଲେ—"ଆ, ଜହ୍ନମାମୁଁ ସରଗଶଶୀ, ମୋ



( ଜହ୍ନ ମାମୁଁ )

କାହ୍ନୁ କୋଳରେ ପଡ଼ି ଖସି ।" ଆଜି ସେଇ ଜହ୍ନ-ମାମୁଁର କୋଳରେ ମଣିଷ ପାଦ ଦେଇ ପାରିଲା । କିନ୍ତୁ ଅଦ୍ଭୁତ କଥା ସତେ !

ଜହ୍ନଭୂଇଁରେ ଆର୍ମଷ୍ଟ୍ରଙ୍ଗ ପ୍ରଥମେ ଖୁବ୍ ଧୀରେ ଧୀରେ ଚାଲିଲେ । କାରଣ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିଠାରୁ ଚନ୍ଦ୍ରରେ ସେହି ଶକ୍ତି ମାତ୍ର ଛଅ ଭାଗରୁ ଏକ ଭାଗ । ଜହ୍ନ ମାଟିରେ ଚାଲି ଅଭ ଦୃଶ୍ୟ ସବୁ ଦେଖି ଆର୍ମଷ୍ଟ୍ରଙ୍ଗ ଆନନ୍ଦରେ ଫୁଲି ଉଠିଲେ । ସେ ହଠାତ୍ କହି ଉଠିଲେ—"ଗୋଟିଏ ମଣିଷ ପାଇଁ ଏହା ଏକ ଛୋଟ ପାହୁଣ୍ଡ । ମାତ୍ର ମଣିଷ ଜାତି ପାଇଁ ଏହା ଏକ ମସ୍ତବଡ଼ ଡ଼ିଆଁ ।"

ଜହ୍ନ ଖାଇକରେ ଓହ୍ଲାଇବାର କେତୋଟି ସେକେଣ୍ଡ ବିଳମ୍ବ ଘଟିଲା । କାରଣ ସେଠା ମାଟିରେ ବହୁ ଗାତ ଓ ପଥର ଢିପା ଥିବାରୁ ଚନ୍ଦ୍ରଯାନଟିକୁ ନିରାପଦରେ ଓହ୍ଲାଇବା ପାଇଁ ଭଲ ଜାଗାଟିଏ ବାଛିବାରେ ସମୟ ଲାଗିଲା । ଚନ୍ଦ୍ରଯାତ୍ରୀମାନେ ସେଠାରେ ଓହ୍ଲାଇବା ମାତ୍ରେ ଆମେରିକାର ରାଷ୍ଟ୍ରପତି ନିକ୍ସନ ସେମାନଙ୍କୁ ଅଭିନନ୍ଦନ



( ଆର୍ମଷ୍ଟ୍ରଙ୍ଗ )

ଜଣାଇଥିଲେ । ସେ କହିଥିଲେ, ଚନ୍ଦ୍ରରେ ଦୁଇଜଣଙ୍କର ପହଞ୍ଚିଲା ମଣିଷ ଜାତିର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତ । ଏହି ଗୌରବପୂର୍ଣ୍ଣ ସଫଳତାରେ ଆମେ ଗର୍ବିତ ।

ଆର୍ମଷ୍ଟ୍ରଙ୍ଗ ମଧ୍ୟ ଅଭିନନ୍ଦନର ଉତ୍ତର ଦେଇ କହିଥିଲେ—ଖାଲି ଆମେରିକା କାହିଁକି ସାରା ମଣିଷ ଜାତିର ପ୍ରତିନିଧି ଭାବରେ ଆମଙ୍କୁ ଚନ୍ଦ୍ରରେ ଓହ୍ଲାଇବାର ସୁଯୋଗ ମିଳିଥିଲା । ଅମେ ସେଥିପାଇଁ ନିଜକୁ ଭାଗ୍ୟବାନ୍ ମନେ କରୁଛୁ ।

## ଜହ୍ନ ରାଇଜରୁ ଘର ବାହୁଡ଼ା

ମହାକାଶ ଯାତ୍ରୀମାନେ ଜହ୍ନ ରାଇଜରେ ନାନା ପ୍ରକାର କାର୍ଯ୍ୟରେ ବ୍ୟସ୍ତ ରହିଥିଲେ । ପୃଥିବୀର ବହୁ ଦେଶର ଲୋକ ଟେଲିଭିଜନରେ ସେ ସବୁ ଦେଖି ପାରୁଥିଲେ । ଆର୍ମଷ୍ଟ୍ରଙ୍ଗ ଚନ୍ଦ୍ରରେ ଥାଇ କହିଥିଲେ—"ଏଠାରେ ଚାଲିବାରେ ବେଶୀ କିଛି ଅସୁବିଧା ହେଉନାହିଁ । ( ତେବେ ସେ ସେଠାରେ ଚାଲୁଥିଲାବେଳେ କଙ୍ଗାରୁ କୁଦା ମାରିଲା ପରି ଦିଶୁଥିଲା । ) ଚଉଦିଗରେ କେତେ ଆକାର ପ୍ରକାରର ପଥର ଖଣ୍ଡମାନ ପଡ଼ିଛି । କେତେ ଛୋଟ ବଡ଼ ଗାତ ମଧ୍ୟ ଦେଖାଯାଉଛି ।"




( ଇଗଲ୍ ଯାନରୁ ଆଲ୍ କନ୍-ଆଲ୍ଡ୍ରିନ୍ ଓହ୍ଲାଉଛନ୍ତି )

ସେ ଚନ୍ଦ୍ର ମାଟିରେ ଚାଲୁଥିଲା ବେଳେ ତାଙ୍କ ଯୋତାରେ ସେଠାର ଧୂଳି ବାଲି ଲାଗିଥିଲା । ଚନ୍ଦ୍ରଯାନର ଛାଇ ପଡ଼ୁଥିବା ଜାଗାଟି ଅନ୍ଧାର ଦେଖାଯାଉ ଥିବା କଥା ସେ ମଧ୍ୟ ଜଣାଇଥିଲେ । ଆର୍ମଷ୍ଟ୍ରଙ୍ଗଙ୍କ ପଛରେ ଆଲ୍‌ଡ୍ରିନ୍ ଚନ୍ଦ୍ରଯାନରୁ ଓହ୍ଲାଇଥିଲେ । ଦୁହେଁ ସାଥି ହୋଇ ସେଠାରେ ବුଲାବୁଲି କରୁଥିଲେ ।

ସେମାନେ ଆନନ୍ଦରେ ଚନ୍ଦ୍ର ରାଇଜର ଧୂଳି, ବାଲି, ଗୋଡ଼ି ଆଦି ସାଉଁଟି ଥିଲେ । ଖୁବ୍ ଯତ୍ନରେ ସେମାନେ ଏ ସବୁ ଜିନିଷ ନିଜ ପକେଟରେ ପୂରାଉଥିଲେ । ହୁସିଆର ନ ହେଲେ ସେଇ ଧୂଳିରେ ଗୋଡ଼ ଖସିଯିବାର ଭୟ ହେଉଥିଲା । ଦୁଇ ତିନି ମିଟର ଲହରୀ ଉଠୁଥିବା ସମୁଦ୍ରରେ ପହଁରିଲା ପରି ସେମାନଙ୍କ ଲାଗୁଥିଲା ।

ଚନ୍ଦ୍ରରେ ଥିଲାବେଳେ ଆର୍ମଷ୍ଟ୍ରଙ୍ଗଙ୍କୁ ଲାଗିଲା ସେ ଯେମିତି ଗୋଟିଏ ଛୋଟ ପିଲା ହୋଇ ମିଠା ଦୋକାନରେ ପଶିଛନ୍ତି । କେତେ ଦ ଦ ସାଉଁଟି ନେବାକୁ ଆଉ କେତେ ପ୍ରକାର ପରୀକ୍ଷା ନିରୀକ୍ଷା କରିବାକୁ ତାଙ୍କ ମନ ଯେମିତି ଉଚ୍ଛନ୍ନ ହୋଇ ପଡ଼ିଲା ।

ଏହି ଚନ୍ଦ୍ର ଯାତ୍ରାକୁ ସବୁଦିନ ପାଇଁ ମନେ ରଖିବାକୁ ଚନ୍ଦ୍ର ଦେହରେ ସେମାନେ ଗୋଟିଏ ଫଳକ ରଖି ଦେଇଥିଲେ । ସେଥିରେ ଲେଖା ହୋଇଥିଲା—"୧୯୬୯ ମସିହା ଜୁଲାଇରେ ପୃଥିବୀର ମଣିଷ ଚନ୍ଦ୍ରରେ ପ୍ରଥମେ ପାଦ ଦେଲା । ସାରା ମଣିଷ ସମାଜର ଶାନ୍ତି କାମନା କରି ଆମେ ଏଠାକୁ ଆସିଥିଲୁ ।"

ଚନ୍ଦ୍ରଯାତ୍ରୀମାନେ ସେଠାରେ ମଧ୍ୟ ପୃଥିବୀର ବହୁ ନେତାଙ୍କ ଦସ୍ତଖତ ଥିବା ଏକ ଲେଖା ଓ ଆମେରିକାର ଜାତୀୟ ପତାକା ପୋତି ଦେଇଥିଲେ । ଚନ୍ଦ୍ର କକ୍ଷରେ ଘୂରୁଥିବା ଆପୋଲୋ-୧୧ ଯାନରେ ମହାକାଶଚାରୀ କଲିନ୍ସ ରହି ସେମାନଙ୍କ ସହିତ ବେତାରରେ କଥାବାର୍ତ୍ତା ହେଉଥିଲେ । ସେମାନେ ମଧ୍ୟ ବେତାରରେ ପୃଥିବୀକୁ ସେମାନଙ୍କ ଅନୁଭୂତିର ଠିକ ନିଖି ବିବରଣୀ ଜଣାଇ ଥିଲେ ।

ଆଲ୍‌ଡ୍ରିନ ଜହ୍ନ କୋଳରେ ପ୍ରାୟ ଦୁଇଘଣ୍ଟା ବୁଲି ବୁଲି ରାତି ସାଢ଼େ ଦଶଟା ବେଳେ ଈଗଲ୍ ଭିତରକୁ ଉଠି ଯାଇ-ଥିଲେ । ତାର ୧୦ ମିନଟ୍ ପରେ ଆର୍ମଷ୍ଟ୍ରଙ୍ଗ ମଧ୍ୟ ସେହି ଚନ୍ଦ୍ରଯାନ ଭିତରକୁ ଗଲେ । କିନ୍ତୁ ଜହ୍ନ ଉପରେ ପ୍ରାୟ ତିନି ଘଣ୍ଟା ବୁଲିଥିଲେ ।

ସେମାନେ ଦୁହେଁ ମିଶି ଜହ୍ନଦେଶରେ ନାନା ପ୍ରକାର ଯନ୍ତ୍ରପାତି ରଖି କେତେ ପରୀକ୍ଷା ନିରୀକ୍ଷା କରିଥିଲେ । ଜହ୍ନ ଦେଶରୁ ମୋଟ ୨୨ କିଲୋଗ୍ରାମ ଓଜନର ପଥର ଓ ଗୋଡ଼ିମାଟି ସାଉଁଟି ଆଣିଥିଲେ । ଜହ୍ନଭୂଇଁ ଏତେ ଟାଣ ଯେ ଆର୍ମଷ୍ଟ୍ରଙ୍ଗ ଯେତେ ଲାଗିଲେ ବି ତିନି ଇଞ୍ଚରୁ ଅଧିକ ଖୋଳି ପାରି ନ ଥିଲେ ।

ଏହି ସମୟରେ ଆପୋଲୋ-୧୧ ମୂଳଯାନ କଲମ୍ବିଆ ୧୧୦ କିଲୋମିଟର ଦୂରରେ ଚନ୍ଦ୍ର ଚାରିପଟେ ଘେରି ବୁଲୁଥିଲା । ଏହାର ଚାଳକ ଥିଲେ କଲିନ୍ସ । ମହାକାଶଚାରୀମାନଙ୍କର ଘରବାହୁଡ଼ା ବେଳ ହୋଇଗଲା । ଆଲ୍‌ଡ୍ରିନ୍ କଲିନ୍ସଙ୍କ

ପ୍ରସ୍ତୁତ ରହିବାକୁ କହିଲେ । କାରଣ ସେହି ମୂଳଯାନ ସହିତ ଚନ୍ଦ୍ରଯାନକୁ ଯୋଡ଼ିବା ଗୋଟିଏ ବଡ଼ ଘାଟି ଥିଲା । ସୁରୁଖୁରୁରେ ନ ହେଲେ ସେମାନଙ୍କର ଘରବାହୁଡ଼ା ସମ୍ଭବ ନଥିଲା ।

ଆର୍ମଷ୍ଟ୍ରଙ୍ଗ ଓ ଆଲଡ୍ରିନ୍ ରାତି ସାଢ଼େ ୧୧ଟାରେ ରକେଟ୍ ନେଇ ଚନ୍ଦ୍ରଯାନକୁ ଚନ୍ଦ୍ରର ଆକାଶକୁ ଉଠାଇ ନେଇଥିଲେ । ରାତି ଅଧରେ ମୂଳଯାନ ସହିତ ଚନ୍ଦ୍ରଯାନଟି ଯୋଡ଼ି ହୋଇଗଲା ।

ମହାକାଶଯାତ୍ରୀ ଦୁହେଁ ଗୋଟିଏ ଅଣଓସାରିଆ ଗଳିବାଟ ଦେଇ ମୂଳଯାନ ଭିତରକୁ ପଶିଗଲେ । ସେମାନେ ସେଥିରେ ନେଇଥିଲେ ଅତି ଯତ୍ନରେ ଜହ୍ନରାଇଜରୁ ସାଉଁଟିଥିବା ବାଲି ଗୋଡ଼ି ଓ ପଥର । ଚନ୍ଦ୍ରଯାନଟିକୁ ତା'ପରେ ସେମାନେ ମୂଳଯାନରୁ ଅଲଗା କରି ଜହ୍ନ ଉପରକୁ ଛାଡ଼ିଦେଲେ । କାରଣ ତାକୁ ପୃଥିବୀ ଉପରକୁ ଫେରାଇ ଆଣିବା ଆଉ ସମ୍ଭବ ନ ଥିଲା ।

ସେଦିନ ଆମେରିକାରେ ଛୁଟିଦିନ ଘୋଷଣା କରାଗଲା । ସମସ୍ତେ ଟେଲିଭିଜନରେ ଏ ସବୁ ଦୃଶ୍ୟ ଦେଖିବାରେ ଲାଗିଗଲେ । ପ୍ରଥମେ ଯାନଟିର ଗତି ଘଣ୍ଟାକୁ ୫୭୦୦ରୁ ୯୧୦୦ କିଲୋମିଟରକୁ ବଢ଼ିଯାଇଥିଲା । ତା'ପରେ ଏହି ଗତିକୁ କମାଇ ଦିଆଯାଇଥିଲା । ମହାକାଶଚାରୀମାନେ ନିରାପଦରେ ଫେରି ଆସିବା କାମନା କରି ଗୀର୍ଜାରେ ଲୋକମାନେ ପ୍ରାର୍ଥନା କଲେ ।

ସେମାନଙ୍କର ବୀରତ୍ୱ ଓ ସାହାସର କାହାଣୀ ସମସ୍ତଙ୍କୁ ମୁଗ୍ଧ କରିଦେଲା ।



( ଇଗଲଯାନ ଚନ୍ଦ୍ରରୁ ପୃଥିବୀ ଦେଖାଯାଉଛି )

କିଛି ସମୟ ଭିତରେ ପୃଥିବୀର ୧୨୦ କିଲୋମିଟର ଉଚ୍ଚରେ ମୂଳଯାନଟି ପହଞ୍ଚିଲା । ମାତ୍ର ୧୫ ମିନିଟ୍‌ରେ ପ୍ରଶାନ୍ତ ମହାସାଗରରେ ଏହି ଯାନଟି ଓହ୍ଲାଇ ପଡ଼ିଲା । ବିଜୟୀ ବୀରମାନଙ୍କୁ ଉଦ୍ଧାର କରିବା ପାଇଁ ଆଗରୁ ଉଡ଼ାଜାହାଜ, ପାଣିଜାହାଜ, ହେଲିକପ୍ଟର ଆଦି ଜଗି ରହିଥିଲେ ।

କେତେକ ସମୁଦ୍ରବୁଡ଼ାଳୀ ସେଇ ପାଖରେ ଛକି ରହିଥିଲେ । ଦରକାର ପଡ଼ିଲେ ସେମାନେ ପାଣି ବେଙ୍ଗ ପରି ସମୁଦ୍ର ଭିତରକୁ ଡେଇଁ ସେମାନଙ୍କୁ ପାଣିରୁ ଛାଣି ଆଣିବେ । ସମୁଦ୍ର କୂଳରେ ବହୁସଂଖ୍ୟାରେ ଲୋକମାନେ ଦେଖିବାକୁ ଜମି ରହିଥିଲେ ।

ପ୍ରଶାନ୍ତ ମହାସାଗରର ଅଶାନ୍ତ ଲହରୀମାଳା । ସେତେ-ବେଳେ ପୁଣି ପାଣିପାଗ ଭାରି ଖରାପ । ତେଣୁ ଆପୋଲୋ-୧୧ର ମୂଳଯାନ ଯେଉଁଠି ଓହ୍ଲାଇବା କଥା, ସେଠାରୁ କିଛି ଦୂରରେ ସେଇ ଯାନଟି ଓଲଟି ପଡ଼ିଲା । ତେବେ ଶୀଘ୍ର ତାକୁ ଠିକ୍



( ପ୍ରଶାନ୍ତ ମହାସାଗରରେ ମହାକାଶଚାରୀ )

ଅବସ୍ଥାରେ ରଖାଗଲା । ମହାକାଶଯାତ୍ରୀମାନେ ଓହ୍ଲାଇଲେ । ସେଇ ସ୍ଥାନ ଥିଲା ହାୱାଇ ଦ୍ୱୀପଠାରୁ ପ୍ରାୟ ତେରଶହ କିଲୋ-ମିଟର ଦୂରରେ । ହେଲିକପ୍ଟରରୁ ରବର ଭେଲା ପକାଇ ଉଦ୍ଧାରକାରୀମାନେ ମହାକାଶଯାନ ନିକଟକୁ ଯାଇଥିଲେ । ଯାନଟିର ଛୋଟ ଦୁଆରଟି ଖୋଲି ତିନୋଟି ଅଲଗା ପୋଷାକ ମହାକାଶଚାରୀମାନଙ୍କ ପାଇଁ ଦିଆଯାଇଥିଲା । ସେହି ପୋଷାକ

ପିନ୍ଧିବା ପରେ ସେମାନଙ୍କୁ ହେଲିକପ୍ଟର ଯୋଗେ ଉଠାଇ ନିଆଯାଇଥିଲା ।

ଗତ ସାଢ଼େ ୧୧ଟାରେ ମହାକାଶଯାତ୍ରୀମାନଙ୍କୁ ହରନେଟ୍ ଜାହାଜ ଉପରକୁ ନିଆଗଲା । କାଳେ ସେମାନେ ଚନ୍ଦ୍ରଦେଶରୁ କିଛି ରୋଗର ଜୀବାଣୁ ସାଥିରେ ନେଇ ଆସିଥିବେ, ସେଥିପାଇଁ ସେମାନଙ୍କୁ ଦେହରେ ଜୀବାଣୁନାଶକ ଔଷଧ ବାଣ୍ଟି ଦିଆଯାଇ ଥିଲା । ସେଥିପାଇଁ ସେମାନଙ୍କୁ ଏକ କାଚଘରେ ମଧ୍ୟ ଅଲଗା କରି ରଖାଗଲା ।

ସେମାନେ ନିରାପଦରେ ଫେରିବା ଖବର ପାଇ ସମସ୍ତଙ୍କ ମନରେ ଅପୂର୍ବ ଆନନ୍ଦ । ସେମାନଙ୍କୁ ଅଭିନନ୍ଦନ ଜଣାଇବାକୁ ସବୁଠି ଲୋକମାନେ ଗୃହରକ ମଧ୍ୟ ମୃହିଁ ରହିଛନ୍ତି । ସେଇ ହର୍‌ନେଟ୍ ଜାହାଜରେ ଆମେରିକାର ରାଷ୍ଟ୍ରପତି ନିକ୍‌ସନ୍ ସେମାନଙ୍କୁ ସମ୍ବର୍ଦ୍ଧନା ଜଣାଇ କହିଥିଲେ—

"ଗଲା ସପ୍ତାହକ ମଧ୍ୟରେ ଆପଣମାନେ ଯାହା କରିଛନ୍ତି, ପୃଥିବୀ ଜନ୍ମଦିନଠାରୁ ଯେତେ ଯାହା ଘଟିଯାଇଛି ତା' ମଧ୍ୟରେ ଏହା ସବୁଠୁ ବଡ଼ ଘଟଣା । ଆପଣମାନଙ୍କ ଚନ୍ଦ୍ରଯାତ୍ରା ପୃଥିବୀ ଇତିହାସର ଅଭୁଲା ଘଟଣା । ଆପଣମାନଙ୍କ ସଫଳତା ସମସ୍ତଙ୍କୁ ନିକଟତର କରି ପାରିବ ।

୧୯୬୯ ମସିହା ଜୁଲାଇ ୨୭ ତାରିଖରେ ହର୍‌ନେଟ୍ ଜାହାଜଟି ହାୱାଇ ଦ୍ୱୀପର ପାର୍ଲ ବନ୍ଦରଠାରେ ପହଞ୍ଚିଲା । ହଜାର ହଜାର ଲୋକ ମହାକାଶଯାତ୍ରୀମାନଙ୍କୁ ଆନ୍ତରିକ ଅଭିନନ୍ଦନ ଜଣାଇଲେ । ଆର୍ମଷ୍ଟ୍ରଙ୍ଗ, ଆଲଡ୍ରିନ୍ ଓ କଲିନ୍‌ସ ସେଇ କାଚଘର ଭିତରେ ଥାଇ ଏହା ହସି ହସି ଗ୍ରହଣ କଲେ ।

ସେମାନଙ୍କୁ ପୁଣି ଏକ ଉଡ଼ାଜାହାଜରେ ହ୍ୟୁଷ୍ଟନ ମହାକାଶ ଗବେଷଣା କେନ୍ଦ୍ରକୁ ନିଆଯାଇଥିଲା । ସେଠାରେ ଏକ ଅଲଗା ଘରେ ସେମାନଙ୍କୁ ୧୭ ଦିନ ପାଇଁ ରଖାଗଲା । ସେମାନଙ୍କ ଦେହରେ କାଳେ ଚନ୍ଦ୍ର ଦେଶର କିଛି ରୋଗ ଜୀବାଣୁ ଆସି ଯାଇଥିବ, ତାହା ପରୀକ୍ଷା କରିବା ଥିଲା ଏହାର ଉଦ୍ଦେଶ୍ୟ ।

ନିଜର ସ୍ତ୍ରୀ ପିଲା, ବାପ ମାଆ ମଧ୍ୟ ଦୂରରୁ ଯାହା ସେମାନଙ୍କୁ ଦେଖିଲେ ଓ କଥା ହେଲେ । ମହାକାଶଚାରୀମାନଙ୍କର ସମସ୍ତ ସୁଖ ସୁବିଧା ପାଇଁ ସେଠାରେ ବ୍ୟବସ୍ଥା କରାଗଲା । ପରେ ଅବଶ୍ୟ ଜଣାପଡ଼ିଲା ଯେ ଜହ୍ନରାଇଜରେ କୌଣସି ରୋଗ ଜୀବାଣୁ ନାହିଁ ।

ଚନ୍ଦ୍ରଦେଶରୁ ଅଣାଯାଇଥିବା ମାଟି ପଥରକୁ ମଧ୍ୟ ଦୁଇଟି ବାକ୍ସରେ ଭର୍ତ୍ତି କରାଗଲା । ପ୍ଲାଷ୍ଟିକ ଖୋଳରେ ଜୀବାଣୁନାଶକ ପଦାର୍ଥ ବୋଳି ବୈଜ୍ଞାନିକ ପରୀକ୍ଷା ନିମନ୍ତେ ହ୍ୟୁଷ୍ଟନକୁ ପଠାଇ ଦିଆଗଲା ।

ବିଜ୍ଞାନୀମାନେ ସେଗୁଡ଼ିକ ମୂଲ୍ୟବାନ ମୋତିମାଣିକ ପରି ବିଚାର କଲେ । ସେଥିମଧ୍ୟରୁ କେତେକ ଦେଖିବାକୁ ଟିକିଏ କଳା ଆଉ କେତେକ ମାଟିଆ । ସେଥିରେ ଥିବା ପଥରଖଣ୍ଡମାନ ଆଗ୍ନେୟ ଉଦ୍‌ଗୀରଣରୁ ତିଆରିଥିବା ପଥର ପରି ଜଣା । ଚନ୍ଦ୍ରମାଟି ପଥରରୁ କୌଣସି ଜୀବର ସତ୍ତା ମିଳି ନ ଥିଲା ।

ଚନ୍ଦ୍ର ଏକ ନିର୍ଜୀବ ମରୁ ଅଞ୍ଚଳ । ଏହା ନିଶ୍ଚିତ ହୋଇଗଲା ତେବେ ଚନ୍ଦ୍ର ବିଷୟରେ ଆହୁରି ଅନେକ କଥା ଜାଣିବାକୁ ବାକି ରହିଲା । ମଣିଷ ଯେ ଚନ୍ଦ୍ରଲୋକରେ ପହଞ୍ଚି ନିରାପଦରେ ଫେରି ଆସିଲେ ଏହା ସବୁରି ମନରେ ଆଶା ଓ ଆନନ୍ଦ ଭରି ଦେଲା । ଏଥିପାଇଁ ଆଜିର ବିଜ୍ଞାନକୁ ଧନ୍ୟବାଦ ନ ଦେଇ କେହି ରହିପାରିବେ ନାହିଁ ।

# ଚନ୍ଦ୍ର ରାଇଜକୁ ଆମ ମାଟିମାଆର ରୂପ

୧୯୬୯ ମସିହା ନଭେମ୍ବର ୧୪ ତାରିଖ । ଆପୋଲୋ-୧୨ ଯାନଟି ମହାକାଶକୁ ଛଡ଼ାଗଲା । ସେଥିରେ ଗଲେ ତିନି ଜଣ ଯାତ୍ରୀ । ଚାର୍ଲସ କନରାଡ଼, ଆଲାନ୍ ବିନ୍, ଏ. ରିଚାର୍ଡ଼ ଗର୍ଡ଼ନ । କନରାଡ଼ ଓ ବିନ୍ ନିରାପଦରେ ଚନ୍ଦ୍ରଦେଶରେ ଓହ୍ଲାଇଥିଲେ । ପ୍ରାୟ ଛଅ ଘଣ୍ଟା କାଳ ସେମାନେ ସେଠାରେ ବୁଲାବୁଲି କଲେ ।



[ଆପୋଲୋ-୧୨ର ଚନ୍ଦ୍ର ରାଇଜରେ ପରୀକ୍ଷା ଯନ୍ତ୍ରପାତି]

ଚନ୍ଦ୍ର ଯାନଠାରୁ ତିନି କିଲୋମିଟର ଦୂରକୁ ସେମାନେ ଯାଇଥିଲେ । ନାନା ପ୍ରକାର ଯନ୍ତ୍ରପାତି ଖଞ୍ଜି ବହୁ ପରୀକ୍ଷା ନିରୀକ୍ଷା କଲେ ଚନ୍ଦ୍ର ରାଜ୍ୟରେ । ବହୁ ଗୋଡ଼ି ପଥର ସଂଗ୍ରହ କଲେ । ସେମାନେ ସେଠାରେ ଯାହାସବୁ କଲେ, ପୃଥିବୀର ଲକ୍ଷ ଲକ୍ଷ ଲୋକ ଟେଲିଭିଜନରେ ଦେଖିଲେ । ସବୁରି ମନରେ ଆନନ୍ଦ ଓ ଆଶ୍ଚର୍ଯ୍ୟ ଭରିଗଲା ।

ମହାକାଶଯାତ୍ରୀମାନେ ସେମାନଙ୍କର ମଜା ଅନୁଭୂତମାନ କହୁଥିଲେ । ସେମାନେ ଯେତକ ଚନ୍ଦ୍ରର ନିକଟକୁ ମହାକାଶ-ଯାନରେ ଯାଉଥିଲେ, ଚନ୍ଦ୍ର ସେତକ ବଡ଼, ପୃଥିବୀ ସେତକ ସାନ ଦେଖାଯାଉଥିଲା । ଚନ୍ଦ୍ର ଆକାଶଟା କଳି କଳି କଳା ଦିଶୁଥିଲା । ଚନ୍ଦ୍ରର ପ୍ରତ୍ୟେକ ଧୂଳିକଣା ତାଙ୍କ ପାଇଁ ବଡ଼ ଲାଗୁଥିଲା । ଅପୂର୍ବ କୌତୂହଳରେ ଚନ୍ଦ୍ରଯାତ୍ରୀମାନେ ମାତି ଯାଇଥିଲେ ଜହ୍ନ ଭୂଇଁରେ ।

ଜହ୍ନରାଇଜରେ ମାର୍କିନ ମହାକାଶଯାତ୍ରୀ ଦୁହେଁ ନୂଆ ଆଶା ଆଉ ଉତ୍ସାହରେ ଲାଗି ପଡ଼ିଲେ । ଦିନେ ସକାଳେ ସେମାନେ ବୁଲୁ ବୁଲୁ ଗୋଟିଏ ବଡ଼ ଗାତ ପାଖରେ ପହଞ୍ଚିଲେ । ଦୁଇ ବର୍ଷ ତଳେ ଆମେରିକା ଚନ୍ଦ୍ରକୁ ପଠାଇଥିବା ସର୍ଭେୟର-୩ ଯାନଟି ସେଇ ଗାତ ମୁହଁରେ ଅଟକି ରହିଥିଲା । ମହାକାଶଯାତ୍ରୀ ଦୁହେଁ ତାର ଫଟୋ ଉଠାଇଲେ ଆଉ ସେଇ ଯାନଟିର କେତେକ ଅଂଶ ସାଥିରେ ଆଣିବାର ଯୋଜନା କଲେ ।

ଚନ୍ଦ୍ରପୃଷ୍ଠରେ ଗୋଟିଏ ବଡ଼ ଗାତ ଭିତରକୁ ପଥରଟିଏ ପକାଇ କନରାଡ଼ କ'ଣ ହେଉଛି ଦେଖିଲେ । ତାର ଶବ୍ଦକୁ ରେକର୍ଡ଼ କଲେ । ଚନ୍ଦ୍ରରେ ମାଧ୍ୟାକର୍ଷଣ ଶକ୍ତି କମ୍ ଥିବାରୁ ସବୁ ଜିନିଷ ଏଠାରେ ହାଲୁକା; ଖଣ୍ଡେ ପଥରକୁ ଗୋଇଠା ମାରି ଫିଙ୍ଗିଲେ ସୁଦ୍ଧା ବେଶୀ ଦୂରକୁ ଯାଉ ନ ଥିଲା ।

ସେଠାରେ ମହାକାଶଯାତ୍ରୀମାନେ ସହଜରେ ହାଲିଆ ହେଉ ନ ଥିଲେ । କିନ୍ତୁ ବହୁ ସମୟ ଚାଲିବା ଫଳରେ ସେମାନଙ୍କ ପୋଷାକ ଓ କ୍ୟାମେରାରେ ମେଞ୍ଚାଏ ମେଞ୍ଚାଏ ଧୂଳି ଲାଗିଯାଉଥିଲା । କନରାଡ଼ ଥରେ ସେଠାରେ ଝୁଣ୍ଟି ପଡ଼ିଥିଲେ ।

ତାଙ୍କ ପୋଷାକ ପତ୍ର ଧୂଳି ସରସର ହୋଇଯାଇଥିଲା । ତେବେ ସେ ହଠାତ୍ ଉଠିପଡ଼ି ଧୂଳି ଝାଡ଼ି ପକାଇଥିଲେ ।



[ ଜହ୍ନ ରାଇଜରେ ପରୀକ୍ଷା ଯନ୍ତ୍ରପାତି ]

ଏଥର ମଧ୍ୟ ମାର୍କିନ ମହାକାଶଯାତ୍ରୀମାନେ ସେମାନଙ୍କର ଜାତୀୟ ପତାକା ଉଡ଼ାଇଥିଲେ । ସେମାନେ ପ୍ରାୟ ୪୦ କିଲୋ ଓଜନର ମାଟି ପଥର ସଂଗ୍ରହ କରିଥିଲେ ଓ ସର୍ଭେୟର ଯାନର କେକେତେକ ଅଂଶ ସାଥିରେ ମଧ୍ୟ ଆଣିଥିଲେ । ନିରାପଦରେ ସେମାନେ ଫେରି ଆସିଥିଲେ ।

ଏଥର ଗୋଟିଏ ନୂଆ କଥା ଘଟିଥିଲା । ୨୩ ତାରିଖ ରାତିରେ ପୃଥିବୀଠାରୁ ଦେଢ଼ ଲକ୍ଷ କିଲୋମିଟର ଦୂରରେ ଥାଇ ଏକ ସାମ୍ବାଦିକ ସମ୍ମିଳନୀରେ ମହାକାଶଯାତ୍ରୀମାନେ ଭାଗ ନେଇ ପାରିଥିଲେ । ସେତେବେଳେ ଆପୋଲୋ ମହାକାଶଯାନଟି ଘଣ୍ଟାକୁ ପ୍ରାୟ ପାଞ୍ଚ ହଜାର କିଲୋମିଟର ବେଗରେ ପୃଥିବୀକୁ ଫେରି ଆସୁଥିଲା ।

ସାମ୍ବାଦିକ ଅନେକ ପ୍ରଶ୍ନ ସେମାନଙ୍କୁ ପଚାରୁଥିଲେ, ହ୍ୟୁଷ୍ଟନ କେନ୍ଦ୍ରର ବୈଜ୍ଞାନିକମାନେ ବେତାର ଯୋଗେ ଆପୋଲୋକୁ ସେସବୁ ପଠାଉଥିଲେ । ମହାକାଶଯାତ୍ରୀମାନେ ସେଗୁଡ଼ିକର

ଉତ୍ତର ଦେଉଥିଲେ । ସାମ୍ବାଦିକମାନେ ପୃଥିବୀରେ ଥାଇ ସେସବୁ ଶୁଣି ପାରୁଥିଲେ ।

ମହାକାଶଯାତ୍ରୀମାନେ ଆଉ ଅନେକ ନୂଆ କଥା କହୁଥିଲେ । ଜହ୍ନ ରାଇଜରେ ପଡ଼ିଗଲେ ପୋଷାକ ଫାଟିଯିବାର ଯେଉଁ ଭୟ ଥିଲା, ତାହା ଠିକ୍ ନୁହେଁ । କାରଣ ସେଠାରେ ମନୁଷ୍ୟ ହଠାତ୍ ପଡ଼ି ନ ଯାଇ ଧୀରେ ଧୀରେ ପଡ଼ିବାରୁ ବେଶୀ ବାଧା ହୁଏ ନାହିଁ ।



[ ଜହ୍ନରୁ ମାଟି ମାଆର ରୂପ ]

ପୃଥିବୀର ଚାରିପଟେ ଇନ୍ଦ୍ରଧନୁ ଘେର ରହିଥିଲା ପରି ଦୃଶ୍ୟ ସେମାନେ ଦେଖିଥିଲେ । ପୃଥିବୀ ତଳେ ଶୁକ୍ର ଗ୍ରହଟି ଅତି ଉଜ୍ଜ୍ୱଳ ଦିଶୁଥିଲା । ସେଠାରୁ ସୂର୍ଯ୍ୟ ପରାଗର ଦୃଶ୍ୟ ଦେଖି ସେମାନେ ମୁଗ୍ଧ ହୋଇପଡ଼ିଥିଲେ ।

ଜହ୍ନ ରାଇଜରୁ ଭାରତ, ଭାରତୀୟ ମହାସାଗର ଓ ଅନ୍ୟ ସମୁଦ୍ରର ଦୃଶ୍ୟ ଅତି ମନୋହର ଦିଶୁଥିଲା । ପ୍ରଶାନ୍ତ ମହାସାଗର ଉପରେ ଧୂଆଁ ମେଘର ସୃଷ୍ଟି ଓ ବିଜୁଳିର ଚମକ ଦେଖି ସେମାନେ ଅବାକ୍ ହୋଇଥିଲେ ।

———

# ମହାକାଶଯାନରେ ବିପଦ

୧୯୭୦ ଏପ୍ରିଲ ୧୨ ତାରିଖ । ଆପୋଲୋ-୧୩କୁ ଜହ୍ନରାଇଜକୁ ପଠାଗଲା । ସେଥିରେ ଗଲେ ଏ. ଲୋଭେଲ, ଫ୍ରେଡ୍ ଏଇସ୍ ଓ ଜନ୍ ସ୍ୱିଗର୍ଟ୍ । ପୃଥିବୀକୁ ପଛରେ ପକାଇ ଆଗେଇ ଚାଲିଲା ରକେଟ୍ ଆପୋଲୋ-୧୩ ଧର । ଘଣ୍ଟା ଘଣ୍ଟା ଧରି ଏମିତି ଛୁଟିବା ପରେ ପୃଥିବୀ ଓ ଚନ୍ଦ୍ରର ମଝିମଝିଆ ବାଟରେ ଏହା ପହଞ୍ଚିଗଲା ।



[ ଦୁଃସାହସୀ ମହାକାଶଚାରୀ ଲୋଭେଲ ]

ଏପ୍ରିଲ ୧୪ ତାରିଖ । ଲୋଭେଲ ବଡ଼ ପାଟିକରି ଉଠିଲେ । ତିନିଜଣଯାକ ମହାକାଶଯାତ୍ରୀ ଭୟରେ ଥରିଗଲେ ।

ସତେ ଏ କ'ଣ ହେଲା ? ଯେଉଁ ଯନ୍ତ୍ରରୁ ବିଜୁଳିଶକ୍ତି ତିଆରି ହୁଏ, ସେଥିରେ ଏକ କଣା !

ଗ୍ୟାସ୍ ଆକାରରେ ରଖାଯାଇଥିବା ଅମ୍ଳଜାନ ଓ ଉଦ୍‌ଜାନ ମିଶାଇ ସାଥିରେ ବିଜୁଳିଶକ୍ତି ସୃଷ୍ଟି କରାଯାଏ । ସେଇ ଶକ୍ତିରେ ଯାନର ସବୁ ଯନ୍ତ୍ରପାତି ଚାଲେ । ଏଇ ଦୁଇଟି ବାଷ୍ପ ମିଶିବାରେ ଯେଉଁ ଜଳ ମିଳେ, ତାହା ପିଇବା କାମରେ ଲାଗେ ।

ମହାକାଶଯାତ୍ରୀମାନେ ଭୟ କଲେ ଏବେ ଯନ୍ତ୍ରଟିରେ କଣା ଦେଖାଗଲାଣି । ସେଥିରେ ଗ୍ୟାସ୍‌ତକ ଶୀଘ୍ର ବାହାରିଯିବ । ତା'ପରେ ବିଜୁଳି ଶକ୍ତି ତିଆରି ହୋଇ ପାରିବ ନାହିଁ କି ପାଣି ଟୋପେ ପିଇବାକୁ ମିଳିବ ନାହିଁ ।

ଖବର ପୃଥିବୀର ବୈଜ୍ଞାନିକମାନେ ପାଇ ଖୁବ୍ ବ୍ୟସ୍ତ ହୋଇ ପଡ଼ିଲେ । କିନ୍ତୁ ଉପାୟ କ'ଣ ଯାନଟିକୁ ଫେରାଇ ଆଣିବା ଛଡ଼ା ଉପାୟ ନାହିଁ ହିସାବ କରି ଦେଖାଗଲା ଯେ ଏଥିପାଇଁ ମଧ୍ୟ ୮୪ ଘଣ୍ଟା ସମୟ ଦରକାର ।

ଏତିକ ସମ୍ଭବତଃ ଯନ୍ତ୍ରପାତି ଚାଲିଲେ ଯାହା ହେବ ? ନଚେତ୍ ମହାଶୂନ୍ୟରେ ତ ଯାନଟି ଧ୍ୱଂସ ପାଇଯିବ । ତିନୋଟି ମୂଲ୍ୟବାନ ଜୀବନ ଏଥି ସହିତ ମଧ୍ୟ ଲୋପ ପାଇଯିବ !

ସାଧାରଣ ଲୋକେ ମଧ୍ୟ ଚିନ୍ତିତ ହୋଇ ପଡ଼ିଲେ । ଅନେକ ସ୍ତ୍ରୀଲୋକ ଦୁଃଖରେ ଭାଙ୍ଗି ପଡ଼ିଲେ । କେତେ କାନ୍ଦି ପକାଇଲେ । ଗୀର୍ଜା, ମସ୍‌ଜିଦ୍, ଦେଉଳ ଗୁରୁଦ୍ୱାର ପ୍ରଭୃତିରେ ମହାକାଶଯାତ୍ରୀଙ୍କ ସ୍ୱାସ୍ଥ୍ୟ ପାଇଁ ପ୍ରାର୍ଥନା କରାଗଲା ।

ଆପୋଲୋ-୧୩ ସେତେବେଳେ ପ୍ରାୟ ୧୮୦ ହଜାର କିଲୋମିଟର ଦୂରରେ । ମହାକାଶଯାତ୍ରୀମାନେ ପ୍ରାଣମୂର୍ଚ୍ଛା

ଲାଗିଥାନ୍ତି । ସତେ ଅବା ଯୁଦ୍ଧଭୂଇଁରେ ମୁହାଁମୁହିଁ ଲଢ଼େଇ ! ଜୀବନମରଣ ସମସ୍ୟା !

ଶେଷରେ ପୃଥିବୀରୁ ନିର୍ଦ୍ଦେଶ ଗଲା—ପୃଥିବୀକୁ ଫେରି ଆସ । ଚନ୍ଦ୍ରଯାନରେ ଖଞ୍ଜା ଯାଇଥିବା ଇଞ୍ଜିନ୍‌ଟିକୁ ଚଲାଅ । ସେଥିରେ ଥିବା ଅମ୍ଳଜାନକୁ ବ୍ୟବହାର କର ।

ଏତେ ବଡ ବିପଦରେ ଧୈର୍ଯ୍ୟ ଧରି ଯନ୍ତ୍ରପାତି ଚଲାଇବା ସହଜ କଥା ନୁହେଁ । ଟିକିଏ ଏପଟ ସେପଟ ହୋଇଗଲେ । ଯାନଟି ବାଟବଣା ହୋଇଯିବାର ଭୟ ! ଟିକିଏ ବଙ୍କାବାଟ ଧରିଲେ ଶହ ଶହ କିଲୋମିଟର ଭୁଆଁ ବୁଲିବାକୁ ହେବ । ଅମ୍ଳଜାନତକ ଶେଷ ହୋଇଯିବ । ଆଉ ତାପରେ···

ମହାକାଶଯାତ୍ରୀମାନଙ୍କ ସାହସକୁ ଶତ ଧନ୍ୟବାଦ । ପ୍ରାୟ ୮୭ ଘଣ୍ଟା ଧୈର୍ଯ୍ୟ ଧରି ଯାନଟିକୁ ଚଲାଇ ସେମାନେ ପ୍ରଶାନ୍ତ ମହାସାଗରରେ ଓହ୍ଲାଇଲେ । ହେଲିକପଟର ଯାଇ ପାଣିରୁ ସେମାନଙ୍କୁ ଉଦ୍ଧାର କଲା ।

ଆମେରିକା ରାଷ୍ଟ୍ରପତି ନିକ୍‌ସନ୍ ସେମାନଙ୍କୁ ଅଭିନନ୍ଦନ ଜଣାଇ ସବୁରି ମନକଥା କହିଲେ– ଆପଣମାନେ ସିନା ଚନ୍ଦ୍ରକୁ ଛୁଇଁ ପାରିଲେ ନାହିଁ । କିନ୍ତୁ ପୃଥିବୀର କୋଟି କୋଟି ଲୋକଙ୍କ ହୃଦୟକୁ ଛୁଇଁ ପାରିଲେ ।

ମଣିଷ ବିପଦରେ ପଡ଼ିଲେ କିପରି ଧୈର୍ଯ୍ୟ ଧରିବାକୁ ହେବ ଆଉ ମରଣ ସାଥିରେ ଲଢ଼େଇ କରି ଜୀବନକୁ କିପରି ବଞ୍ଚାଇ ପାରିବ, ଆପୋଲୋ-୧୩ର ମହାକାଶଯାତ୍ରୀମାନେ ଦେଖାଇଦେଲେ । ସେଥିପାଇଁ ସେମାନଙ୍କ ଚନ୍ଦ୍ରଯାତ୍ରା ବିଫଳ ହେଲେହେଁ ଅପୂର୍ବ ସଫଳତାରେ ଚିରଉଜ୍ଜ୍ୱଳ ହୋଇ ରହିବ ।

———

## ଜହ୍ନ ମାଟିରେ ମଟରଗାଡ଼ି—(୧)

୧୯୭୧ ଫେବ୍ରୁୟାରୀ ୫ ତାରିଖ । ଆପୋଲୋ-୧୪ ମହାକାଶ ଯାନଟିରେ ଆଲାନ ବି. ସେପାର୍ଡ଼, ଷ୍ଟୁଆର୍ଟ ଏ. ରୁଜା ଓ ଏଡ୍‌ଗାର ଡି. ମିଚେଲ୍ ମହାକାଶଯାତ୍ରୀମାନେ ଚନ୍ଦ୍ରଦେଶକୁ ଯାଇଥିଲେ । ଚନ୍ଦ୍ରଯାନ କେତେକ ଅସୁବିଧା ଯୋଗୁ ବିଳମ୍ବରେ ଜହ୍ନରାଇଜରେ ଓହ୍ଲାଇଲା । ସେପାର୍ଡ଼ ଓ ମିଚେଲ୍ ଚନ୍ଦ୍ରଯାନରୁ ବାହାରିଲେ ।

ପ୍ରଥମଥର ପାଇଁ ଚନ୍ଦ୍ରଦେଶର ଏହି ସମସ୍ତ ଦୃଶ୍ୟ ରଙ୍ଗୀନ ଟେଲିଭିଜନରେ ପୃଥିବୀବାସୀମାନେ ଦେଖିପାରିଲେ । କଳା-ହାଣ୍ଡିଆ ଦିଗ୍‌ବଳୟ ଧାରରେ ଧଳା ଚନ୍ଦ୍ରଯାନ ଆଉ ଗୋରା ମହାକାଶଯାତ୍ରୀମାନେ ଖୁବ୍ ସୁନ୍ଦର ଦିଶୁଥିଲେ ଜହ୍ନରାଇଜଟି । କେତେବେଳେ ଧୂସର ତ କେତେବେଳେ ଶାଗୁଆ ଦେଖା ଯାଉଥିଲା ।

ଚନ୍ଦ୍ରଯାତ୍ରୀମାନେ ଚନ୍ଦ୍ରରେ ନାନା ପ୍ରକାର ଯନ୍ତ୍ରପାତି ସାହାଯ୍ୟରେ ଭୂମିକମ୍ପ, ପାଣିପାଗ, ମାଟିପଥର, ଗ୍ୟାସ ପ୍ରଭୃତି ପରୀକ୍ଷା ନିରୀକ୍ଷା କଲେ । ସେହି ଖବର ବେତାରଦ୍ୱାରା ପୃଥିବୀର ବୈଜ୍ଞାନିକମାନଙ୍କୁ ଜଣାଇଲେ ।

ପ୍ରଥମଥର ପାଇଁ ସେମାନେ ଗୋଟିଏ ଦୁଇଚକିଆ ଗାଡ଼ି ଜହ୍ନରାଇଜରେ ବ୍ୟବହାର କରିଥିଲେ । ଏଥିରେ କ୍ୟାମେରା, ମାଟିପଥର ପ୍ରଭୃତି ବୁହାଇବାକୁ ସୁବିଧା ହେଲା । ଅନ୍ଧକାର

ଅସୁବିଧା ହେଉଥିଲେ ସୁଦ୍ଧା ଏଥର ସେମାନେ ଏଥିପାଇଁ ପ୍ରସ୍ତୁତ ହୋଇ ଯାଇଥିଲେ ।



[ ଜନ୍ମଗାଇକରେ ଦୁଇଚକିଆ ଗାଡ଼ିର ଗୁଳା ]

ଏଥର ସେମାନେ ଚନ୍ଦ୍ରଦେଶର ଗୋଟିଏ ପାହାଡ଼ ଉପରେ ଚଢ଼ିବାକୁ ଚେଷ୍ଟା କଲେ । କିନ୍ତୁ ସେଥିରେ ଶୀଘ୍ର କ୍ଳାନ୍ତ ହୋଇଯିବାରୁ ଚନ୍ଦ୍ରଯାନ ପାଖକୁ ଫେରି ଆସିଲେ । ଚାରି ଘଣ୍ଟାରୁ ଅଧିକ ସମୟ ସେମାନେ ଜନ୍ମଗାଇକରେ ଚଲାବୁଲା କଲେ । ଚନ୍ଦ୍ରର ଗଠନ ବିଷୟରେ ସେମାନେ ନାନା ପ୍ରକାର ଅନୁସନ୍ଧାନ କରିଥିଲେ ।

୧୯୬୧ ମସିହା ଜୁଲାଇ ୨୭ ତାରିଖ । ମହାକାଶ କେନ୍ଦ୍ର କେପ୍ କେନେଡ଼ିଠାରେ ମହାଶୂନ୍ୟକୁ ମୁହଁ ଠିଆ ହୋଇଛି ଏକ ମସ୍ତବଡ଼ ରକେଟ୍ । ତା ମୁଣ୍ଡରେ ଲଦାହୋଇଛି ଏକ ପ୍ରକାଣ୍ଡ ମହାକାଶଯାନ ଆପୋଲୋ-୧୫ । ସମୁଦାୟ ଛତିଶ ମହଲା କୋଠାଟିଏ ଯେମିତି ମୁଣ୍ଡଟେକ ଠିଆ ହୋଇଛି !

ମହାଶୂନ୍ୟରେ ଲକ୍ଷ ଲକ୍ଷ କିଲୋମିଟର ଯାତ୍ରା କରିବାକୁ ସେ ଅଣ୍ଟାଭିଡ଼ି ବାହାରିଛି । ପ୍ରାୟ ପନ୍ଦର କିଲୋମିଟର ଦୂରରୁ ତାହା ଦେଖାଯାଉଛି । ଏଥିରେ ଯେଉଁ ତିନିଜଣ ମହକାଶଯାତ୍ରୀ ଯିବେ, ସେମାନେ ହେଲେ ଡେଭିଡ୍. ଆର. ସ୍କଟ୍, ଆଲ୍‌ଫ୍ରେଡ଼ ଏମ୍. ଓ୍ୱାଡନ୍ ଓ ଜେମ୍‌ସ ବି. ଇରଉଇନ୍ ।

ସେଦିନ ଗୃତ ଭୋର୍ । ପାଗ ଭଲ । ଆକାଶ ସଫା ସୁତୁରା । ଧୀରେ ଧୀରେ ଶୀତଳ ପବନ ବହୁଛି । ଦିଗ୍‌ବଳୟ ଧାରରେ କେତେଖଣ୍ଡ ନିଆମେଘ ଭାସି ବୁଲୁଛି । ରକେଟ୍ ଏବେ ମହାଶୂନ୍ୟକୁ ଛୁଟିବ ।

ଠିକ୍ ସମୟରେ ମାତ୍ର ଏକ ମିନଟ୍ ପୂର୍ବରୁ ରକେଟ୍‌ରେ ନିଆଁ ଧରିଲା । ପ୍ରବଳ ଧୂଆଁ ଆଉ ନିଆଁ ଛୁଟିଲା ତା ପଛରୁ । କି ବିକଟାଳ ଶବ୍ଦ । ସେକଣ୍ଡପଟିଏ ପରେ ରକେଟ୍‌ଟି କମ୍ପି ଉଠିଲା । ଦେଢ଼ ମିନଟ୍‌ରେ ୧୫ କିଲୋମିଟର ଧାଇଁଲା ସେ । କେତେ ନିଆଁ, ଧୂଆଁ ଆଉ ଶବ୍ଦ ! ଦେଖୁ ଦେଖୁ ପାଞ୍ଚ ମିନଟ୍‌ରେ ସାଢ଼େ ଗୃରି ଶହ କିଲୋମିଟର ଉଠିଲା । ତା'ପରେ ଆଉ ଖାଲି ଆଖିରେ କିଛି ଦିଶିଲା ନାହିଁ ।

ମାଟିମାଆର ଡୋର ଛୁଡ଼ି ଛୁଡ଼ି ଆସିଲା । ମାଧ୍ୟାକର୍ଷଣ ବଳ କମି କମି ଆସିଲା । ଜହ୍ନମାମୁଁ ଦିଶିଲା କେତେ ବଡ଼ !

ଏତେ ବଡ଼ ପୃଥିବୀ ଲାଗିଲା ସାନ ! ଦେଶ ମହାଦେଶର ସୀମାସରହଦ କୁଆଡ଼େ ଉଭେଇଗଲା ।

ପ୍ରାୟ ଘଣ୍ଟାଏ ପରେ ଆପୋଲୋ-୧୫ର ଚନ୍ଦ୍ରଯାନ ଫାଲ୍‌କନ ଜହ୍ନଗାଇକରେ ଓହ୍ଲାଇଲା । ଓର୍ଡ଼ନ୍ ମୂଳଯାନରେ ରହି ତା ଚାରିପଟେ ଘୂରି ବୁଲିଲେ । ସ୍କଟ୍ ଓ ଇରଉଇନ୍ ଜୁଲାଇ ୩୧ ତାରିଖରେ ଚନ୍ଦ୍ରଯାନରୁ ବାହାରି ଜହ୍ନମାଟିରେ ପାଦ ଦେଲେ ।

ସେମାନେ ଚନ୍ଦ୍ରର ଯେଉଁ ଅଞ୍ଚଳରେ ଓହ୍ଲାଇଲେ, ତାର ନାଁ ବୈଜ୍ଞାନିକମାନେ ଦେଇଥିଲେ—ହାଡ଼ଲେ ଆପେନାଇନ୍ । ଆପେନାଇନ୍ ପର୍ବତମାଳା ଚାରି ହଜାର ମିଟର ଉଚ୍ଚ । ହାଡ଼ଲେ ଉପତ୍ୟକାଟି ତିନିଶହ ଷାଠିଏ ମିଟର ଗଭୀର ଓ ପ୍ରାୟ ଶହେ କିଲୋମିଟର ଲମ୍ବ !

ଏଥର ଚନ୍ଦ୍ରଯାତ୍ରୀମାନେ ସାଥିରେ ନେଇଥିଲେ ଗୋଟିଏ ମଟର ଗାଡ଼ି । ତାର ନାଁ ଥିଲା ରୋଭର୍ । ଏଥିରେ ଚାରୋଟି ଚକ । ଦରକାର ପଡ଼ିଲେ ଦୁଇଟି ଚକରେ ବି ଚାଲିପାରିବ ! ବ୍ୟାଟେରୀରୁ ବିଜୁଳିଶକ୍ତି ବାହାରି ଏହାକୁ ଚଳାଇଲା । ଯେତେ ସବୁ ଯନ୍ତ୍ରପାତି ଏଥିରେ ଲାଗିଥିଲା, ତାର ମୂଲ୍ୟ ପ୍ରାୟ ଦଶକୋଟି ଟଙ୍କା । କିନ୍ତୁ ଏହାର ଗତି ହାରାହାରି ଦଶ କିଲୋମିଟର ଘଣ୍ଟାକୁ । ନଚେତ୍ ଜହ୍ନମାଟିର ଖାଲଢିପ ରାସ୍ତାରେ ସେ ଲେଉଟି ପଡ଼ିବ ଯେ । ଅବଶ୍ୟ । ସେ ଯେମିତି ଲେଉଟିବ ନାହିଁ, ସେଥିପାଇଁ ସବୁ ବ୍ୟବସ୍ଥା କରାଯାଇଥିଲା ।

ସେଇ ମଟର ଗାଡ଼ିର ଓଜନ ପୃଥିବୀରେ ଥିଲା ୨୦୯ କେଜି । କିନ୍ତୁ ଚନ୍ଦ୍ରରେ ତାହା ହେଲା ମାତ୍ର ୩୫ କେଜି ।



[ ଜହ୍ନ ମାଟିରେ ମଟରଗାଡ଼ି ]

ସେଥିରେ ଗୋଟିଏ କମ୍ପ୍ୟୁଟର ଲାଗିଥିଲା । ତା ସାହାଯ୍ୟରେ ଚନ୍ଦ୍ରଯାତ୍ରୀମାନେ ସ୍ଥାନ ଓ ଦୂରତା ବିଷୟରେ ଜାଣିପାରୁଥିଲେ । ସେଇ ମଟରଗାଡ଼ିରେ ମଧ୍ୟ ଗୋଟିଏ ଟେଲିଭିଜନ କ୍ୟାମେରା ଖଞ୍ଜା ଯାଇଥିଲା । ଏହାକୁ ପୃଥିବୀର ବେତାର ସାହାଯ୍ୟରେ ଚଳାଇବାର ବ୍ୟବସ୍ଥା ଥିଲା । କି ଆଶ୍ଚର୍ଯ୍ୟର କଥା ସତେ ! ଲକ୍ଷ ଲକ୍ଷ କିଲୋମିଟର ଦୂରରୁ ମଧ୍ୟ ମଣିଷର ଅଦେଖା ହାତ ଯନ୍ତ୍ରଗୁଡ଼ିକରେ କାମ କରୁଥିଲା ।

# ଜହ୍ନରାଇଜରେ ମଟରଗାଡ଼ି—(୨)

୧୯୭୧ ମସିହା ଜୁଲାଇ ୩୧ ତାରିଖ । ଡାଭିଡ୍ ସ୍କଟ୍ ଓ ଇରୱିନ୍ ଜହ୍ନରାଇଜରେ ପାଦ ଦେବା ଲୋକଙ୍କ ଭିତରେ ହେଲେ ସପ୍ତମ ଓ ଅଷ୍ଟମ । କିନ୍ତୁ ସେଠାରେ ମଟରଗାଡ଼ି ଚଳାଇବାରେ ହେଲେ ପ୍ରଥମ ।

ସେମାନେ ଜହ୍ନ ଦେଶରେ ଗାତ ଖୋଳି ମାଟି ପରୀକ୍ଷା କରିଥିଲେ । ଯନ୍ତ୍ରପାତି ଖଞ୍ଜି ଦାଗ ନିରୀକ୍ଷଣ କରିଥିଲେ । ଫଟୋ ଉଠାଇବା ଓ ମାଟିପଥର ସଂଗ୍ରହ କରିବାରେ ଲାଗି ପଡ଼ିଲେ । ପ୍ରଥମ ଦିନ ଏମିତି ସେମାନେ ଜହ୍ନମାଟିରେ ଛଅଘଣ୍ଟା କଟାଇଲେ ।



[ ଡାଭିଡ୍ ସ୍କଟ୍ ଜହ୍ନଭୂଇଁରେ ପରୀକ୍ଷାରତ ]

ହାଲୁଆ ହୋଇ ପଡ଼ିଥିଲେ । ତେଣୁ ସେମାନେ ଚନ୍ଦ୍ରଯାନ ଭିତରେ ବେଶୀ ସମୟ ଶୋଇ ପଡ଼ିଲେ । ହଷ୍ଟନ୍ ମହାକାଶ ଗବେଷଣା କେନ୍ଦ୍ରରୁ ବେତାର ଖବର ଦେଇ ସେମାନଙ୍କୁ ଉଠାଇ ଦିଆଗଲା । ଲକ୍ଷ ଲକ୍ଷ ଟେଲିଭିଜନରେ ସେମାନଙ୍କର ସବୁ କାର୍ଯ୍ୟକଳାପ ପୃଥିବୀର ଲୋକମାନେ ଦେଖି ପାରୁଥିଲେ । ମଟର ଗାଡ଼ିର ଆଗ ଚକାଟିଏ ଅଚଳ ହୋଇଯାଇଥିଲା । ମାତ୍ର ଦ୍ୱିତୀୟ ଦିନକୁ ଠିକ୍ ହୋଇଗଲା ।

ଚନ୍ଦ୍ରଯାନଠାରୁ ସେମାନେ ଛଅ କିଲୋମିଟର ଦୂରକୁ ସହଜରେ ଯାଇ ପାରିଲେ । ସେମାନେ କେତେ ପ୍ରକାର ବୈଜ୍ଞାନିକ ପରୀକ୍ଷା ଚଳାଇଲେ । ବହୁ କଷ୍ଟରେ ତିନି ମିଟର ଗଭୀରର ଦୁଇଟି ଗାତ ଖୋଳି ପାରିଥିଲେ । ତା ତଳକୁ ନରମ ମାଟି ପଡ଼ିବା ଆଶା ଥିଲେହେଁ ଖୁବ୍ କଠିନ ପଥର ପଡ଼ିଥିଲା । ସେମାନେ ପ୍ରାୟ ୭୭ କେଜି ଓଜନର ଶିଳା ସଂଗ୍ରହ କରିଥିଲେ । ସେଥିରୁ କେତେକ ୪୬୦ କୋଟି ବର୍ଷର ପୁରୁଣା !

ମହାକାଶଯାତ୍ରୀମାନେ ଚନ୍ଦ୍ର ଗ୍ରହଣ ଓ ସୂର୍ଯ୍ୟ ପରାଗ ଏକ ସମୟରେ ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ଏ ସବୁର ଘଟଣାରେ ନାନା ବର୍ଣ୍ଣର ସୁନ୍ଦର ସମାବେଶ ଦେଖି ସେମାନେ ମୁଗ୍ଧ ହୋଇଥିଲେ ।

୧୯୭୧ ମସିହା ଅଗଷ୍ଟ ୮ ତାରିଖରେ ସେମାନେ ପ୍ରଶାନ୍ତ ମହାସାଗରରେ ଓହ୍ଲାଇଲେ । ଚନ୍ଦ୍ରରେ ଜୀବାଣୁର ଭୟ ନ ଥିବାରୁ ସେମାନଙ୍କୁ ଆଉ ଅଲଗା ରଖାଗଲା ନାହିଁ । ସେମାନେ ଆନନ୍ଦରେ ଅନ୍ୟମାନଙ୍କ ସହିତ ମିଶିଗଲେ । ରାଷ୍ଟ୍ରପତି ନିକ୍ସନ ଜଣାଇଲେ – ତୁମ ପ୍ରତ୍ୟେକଙ୍କୁ ଆମର ଅଭିନନ୍ଦନ ! ଚମତ୍କାର କାର୍ଯ୍ୟ ଦେଖାଇଲ ।

ଆପୋଲୋ-୧୭ ମହାକାଶଯାନରେ ଯାତ୍ରା କରି ଜନୟଙ୍ଗ ଓ ଚାର୍ଲସ ଡିଉକ୍ ଚନ୍ଦ୍ରଦେଶରେ ଓହ୍ଲାଇଥିଲେ । ସେମାନେ ସବୁଠୁଁ ଅଧିକ ୭୧ ଘଣ୍ଟା ସେଠାରେ ରହି ଅସୀମ ଧୈର୍ଯ୍ୟ ଦେଖାଇଥିଲେ । ସେମାନେ ନୂଆ ପ୍ରକାରର ଶିଳା ସଂଗ୍ରହ କରିଥିଲେ । ବିଜୁଳି ଚାଳିତ ମଟରଗାଡ଼ି ସାହାଯ୍ୟରେ ଏକ ପାହାଡ଼ର ୨୫୦ ମିଟର ଉପରକୁ ଉଠିଥିଲେ । ଚନ୍ଦ୍ର ଜନ୍ମ ସମୟରେ ପ୍ରବଳ ଆଗ୍ନେୟ ଉଦ୍‌ଗୀରଣରୁ ଏହି ପାହାଡ଼ର ସୃଷ୍ଟି ବୋଲି ବୈଜ୍ଞାନିକମାନେ ମତ ଦିଅନ୍ତି ।



[ ଜନୟଙ୍ଗ୍ ]

ଚନ୍ଦ୍ରଯାତ୍ରୀମାନେ ମୋଟ ୧୧୧ କିଲୋଗ୍ରାମ ଓଜନର ଶିଳା ସଂଗ୍ରହ କରିଥିଲେ । ଚନ୍ଦ୍ର ଉପରେ ମଟରଗାଡ଼ି ଚଳାଇଲା-ବେଳେ ଲକ୍ଷ ଲକ୍ଷ ଟେଲିଭିଜନରେ ଏହା ଦେଖାଯାଉଥିଲା । ଥରେ ଥରେ ସେମାନେ ଘଣ୍ଟାକୁ ୬୭ କିଲୋମିଟର ତ କେତେ-ବେଳେ ମାତ୍ର ୫ କିଲୋମିଟର ବେଗରେ ମଟରଗାଡ଼ି ଚଳାଇ-

ଥିଲେ । ସେମାନେ ମୋଟ ୨୫ କିଲୋମିଟର ବାଟ ମଟର ଗାଡ଼ିରେ ଯାଇଥିଲେ ।

ଚନ୍ଦ୍ରଦେଶରେ ବହୁତ ଧୂଳି । ଚନ୍ଦ୍ରଯାତ୍ରୀମାନେ ବାରମ୍ବାର ନିଜ ପୋଷାକରୁ ଧୂଳି ସବୁ ଝାଡ଼ୁଥିଲେ । କିନ୍ତୁ ସେମାନେ ସଦାବେଳେ ହସ ହସ ଦେଖାଯାଉଥିଲେ । ଚନ୍ଦ୍ରଠାରୁ ବିଦାୟ ନେବାପୂର୍ବରୁ ସେମାନେ ଆନନ୍ଦରେ ଡେଇଁଥିଲେ । ଥରେ ଡିଉକ୍ ପଡ଼ିଯାଇ ସଙ୍ଗେ ସଙ୍ଗେ ଉଠି ପଡ଼ିଥିଲେ ।

ଆପୋଲୋ-୧୭ ମହାକାଶଯାନ ଶେଷଥର ପାଇଁ ଯାତ୍ରା କରିଥିଲା ୧୯୭୨ ଡିସେମ୍ବର ମାସରେ । ପ୍ରାୟ ୧୩ ଦିନ ଧରି ଏହି ଯାତ୍ରା ଖୁବ୍ ସଫଳତାର ସହିତ ସମାହିତ ହୋଇଥିଲା ।



[ ଇଉଜିନ ]

ଏଥିରେ ହାରିସନ ସ୍ମିଟ୍, ଇଉଜିନ କେର୍ଣ୍ଣାନ୍ ଓ ରୋନାଲଡ଼ ଇଭାନ୍‌ସ ଯାତ୍ରା କରିଥିଲେ । ପ୍ରଥମ ଦୁଇଜଣ ଚନ୍ଦ୍ରଯାନରେ

ଓହ୍ଲାଇ ନାନା ପ୍ରକାର ଜଟିଳ ଯନ୍ତ୍ରପାତି ଖଞ୍ଜି ପରୀକ୍ଷା ନିରୀକ୍ଷା କରିଥିଲେ । କମଳା ପରି ଗୋଲାକାର ଚନ୍ଦ୍ରଶିଳା ଦେଖି ସେମାନେ ଖୁବ୍ ଆନନ୍ଦିତ ହୋଇଥିଲେ ।

ଚନ୍ଦ୍ରଯାତ୍ରୀମାନେ ଚନ୍ଦ୍ର ଦେଶରେ ମୋଟ ୭୫ ଘଣ୍ଟା ରହିଥିଲେ ଏବଂ ବୁଲିବାରେ ଓ ମଟର ଚଳାଇବାରେ ୨୨ ଘଣ୍ଟାରୁ ଅଧିକ ସମୟ କଟାଇଥିଲେ । ସବୁଠୁ ବେଶୀ ୭ ଘଣ୍ଟା କାଳ ସେମାନେ ଜହ୍ନଭୂଇଁରେ ବୁଲିଥିଲେ । ସେମାନଙ୍କ ମଟରଗାଡ଼ି ଘଣ୍ଟାକୁ ଅଟରେ ଅଟରେ ୧୮ କିଲୋମିଟର ବେଗରେ ଯାଇପାରୁଥିଲା । ସେମାନେ ସେଇ ଗାଡ଼ିରେ ମୋଟ ୩୪.୪ କିଲୋମିଟର ବାଟ ଅତିକ୍ରମ କରିଥିଲେ । ସେମାନେ ପ୍ରାୟ ୧୨୫ କେଜି ଓଜନର ନୂଆ ଓ ପୁରୁଣା ଚନ୍ଦ୍ରଶିଳା ସଂଗ୍ରହ କରିଥିଲେ ।

ଚନ୍ଦ୍ରଯାତ୍ରୀମାନେ ନିରାପଦରେ ମାଟିମାଆ କୋଳକୁ ଫେରି ଆସିଥିଲେ । କିନ୍ତୁ ସେମାନେ ବାହୁଡ଼ିବା ପୂର୍ବରୁ ଜହ୍ନରାଇଜରେ ଏକ ସ୍ମାରକୀ ରଖିଦେଇ ଆସିଥିଲେ । ସେଥିରେ ଲେଖାଅଛି— ଆମେ ଯେଉଁ ଶାନ୍ତି-ମନୋଭାବ ନେଇ ଏଠାକୁ ଆସିଥିଲୁ, ସେଇ ଶାନ୍ତି ସାରା ମଣିଷ ଜାତିର ଜୀବନରେ ଉକୁଟି ଉଠୁ ।

---

# ଜହ୍ନ ରାଇଜରେ ଯନ୍ତ୍ର ମଣିଷ

ଆମେରିକା ଚନ୍ଦ୍ରକୁ ମଣିଷ ପଠାଇ ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା ଚଳାଇଥିଲାବେଳେ ଋଷ ସେମିତି ଚୁପ୍ ହୋଇ ରହି ନ ଥିଲା । ସେ ଚନ୍ଦ୍ରକୁ ଯନ୍ତ୍ର ବା ଯନ୍ତ୍ର ମଣିଷ ପଠାଇ ସେଇସବୁ କାର୍ଯ୍ୟ ଚାଲୁ ରଖିଥିଲା । ଏହା ବି କମ୍ ଆଶ୍ଚର୍ଯ୍ୟ କଥା ନୁହେଁ !

ଲୁନା-୧୭ ନାମକ ଏକ ମହାକାଶଯାନକୁ ଋଷର ବୈଜ୍ଞାନିକମାନେ ଚନ୍ଦ୍ରକୁ ପଠାଇଥିଲେ । ସେଥିରେ ମଣିଷ ନ ଥିଲା । ତାହା ୧୯୭୦ ମସିହା ନଭେମ୍ବର ୧୭ର କଥା । ଯେଉଁ ଚକ ପୃଥିବୀରେ ଚମକ ସୃଷ୍ଟି କରିଥିଲା । ସେଇ ଚକଲଗା ଯାନଟିଏ ଚନ୍ଦ୍ରରେ ଚହଳ ପକାଇ ଦେଲା । ତାହା ଯନ୍ତ୍ର ମଣିଷ ପରି କାମ କରିଥିଲା । ତାହା ଥିଲା ଲୁନାଖୋଦ-୧ । ଏହା ଏକ ଆଠଚକିଆ ଗାଡ଼ି । ଲୁନା-୧୪ରେ ଏହାକୁ ଚନ୍ଦ୍ରଦେଶକୁ ପଠାଯାଇ ଋଷ ପରୀକ୍ଷା କରିଥିଲା ।

ଏହା ଆଗରୁ ଲୁନା-୧୬ରେ ମଧ୍ୟ ଏକ ଯନ୍ତ୍ରମଣିଷ ପଠାଯାଇଥିଲା । ୧୯୭୦ ସେପ୍ଟେମ୍ବର ମାସରେ ଏହା ଜହ୍ନ ରାଇଜକୁ ପଠାଯାଇଥିଲା । ଏହା ସେଠାରେ ଶିଳାକୁ କାଟି ଭାଙ୍ଗି ପକାଇଥିଲା । ଏହାର ଦକ୍ଷତା ଦେଖି ବହୁ ଦେଶର ବିଜ୍ଞାନୀମାନେ ଅବାକ୍ ହୋଇ ଯାଇଥିଲେ ।

ଏହି ଗାଡ଼ିଟିରେ ତିନୋଟି ଟେଲିଭିଜନ କ୍ୟାମେରା ଲାଗିଥିଲା । ତା ସାହାଯ୍ୟରେ ଚନ୍ଦ୍ରର ସୁନ୍ଦର ଦୃଶ୍ୟମାନ ଟେଲିଭିଜନରେ ଦେଖାଯାଇଥିଲା । ସୂର୍ଯ୍ୟ ଲୋକରୁ ଏହି ଗାଡ଼ି ଶକ୍ତି ସଂଗ୍ରହ କରୁଥିଲା । ଗାଡ଼ିରେ ଖଞ୍ଜା ଯାଇଥିବା ବ୍ୟାଟେରୀ ସାହାଯ୍ୟରେ ଏହା ହେଉଥିଲା ।

ପ୍ରଥମ ପାଞ୍ଚ ଦିନରେ ଏହି ବଗି ୧୯୭ ମିଟର ଗଡ଼ିଥିଲା । ପୃଥିବୀର ବୈଜ୍ଞାନିକମାନଙ୍କ ସହିତ ଏହା ଖବର ଦିଆନିଆ କରୁଥିଲା । ଚନ୍ଦ୍ରରେ ୧୪ ଦିନକୁ ନେଇ ଗୋଟିଏ ଲମ୍ବା ଦିନ ହୁଏ । ସେମିତି ୧୪ ରାତିକୁ ନେଇ ଗୋଟିଏ ଲମ୍ବା ରାତି ହୁଏ । ତେଣୁ ଲୁନାଖୋଦ ଏଇମିତି ଲମ୍ବା ଦିନରେ କାମ କରେ ଆଉ ରାତିରେ ଶୋଇପଡ଼େ ।

୧୯୭୧ ଅକ୍ଟୋବର ମାସରେ ଲୁନା ଖୋଦ-୧ର କାର୍ଯ୍ୟ ଶେଷ ହୋଇଥିଲା । ସେ ଚନ୍ଦ୍ରରେ ମୋଟ ୧୦.୫୪୦ ମିଟର ବୁଲି ୫୦୦ଟି ଜାଗାରେ ମାଟି ପରୀକ୍ଷା କରିଥିଲା । ଏହା ମୋଟ ୨୦,୦୦୦ ଚିତ୍ର ପୃଥିବୀକୁ ପଠାଇଥିଲା । କି ଆଶ୍ଚର୍ଯ୍ୟର କଥା !



[ ଚନ୍ଦ୍ର ରାଇଜରେ ଯନ୍ତ୍ର ମଣିଷ ]

୧୯୭୦ ସେପ୍ଟେମ୍ବର ୧୨ ତାରିଖରେ ଉଡ଼ି ଯାଇ-ଥିଲା ଲୁନା-୧୬ । ସେଥିରେ ଗୋଟିଏ ଅଧିକ ଯନ୍ତ୍ର ଖଞ୍ଜା

ଯାଇଥିଲା । ଏହା ଚନ୍ଦ୍ରଶିଳା ଖୋଳି ପୃଥିବୀକୁ କିଛି ବୁହାଇ ଆଣି ପାରିଥିଲା । ଚନ୍ଦ୍ରପୃଷ୍ଠରୁ ପ୍ରାୟ ୮୪ ଗ୍ରାମ୍ ଓଜନର ସବୁ ଏମିତି ଆସିଥିଲା ।

ବିଭିନ୍ନ ପ୍ରକାରରେ ଏହା ଜହ୍ନ ରାଇଜର ଫଟୋ ଉଠାଇ ଥିଲା । ନାନା ପ୍ରକାର ପରୀକ୍ଷା ନିରୀକ୍ଷା କରିଥିଲା । ସେଠାରୁ ଆସିଥିବା ଚନ୍ଦ୍ରଶିଳା ୪୫୦ କୋଟି ବର୍ଷ ତଳର ବୋଲି ବୈଜ୍ଞାନିକମାନେ ମତ ଦେଇଥିଲେ । ଏହା ଦେଖିବାକୁ ଅଳ୍ପ ଲାଲ ଓ ଶାଗୁଆ ।

ଋଷ ଏହା ପରେ ଲୁନା ୧୮ ଓ ୧୯ ଚନ୍ଦ୍ରକୁ ପଠାଇଥିଲା । ଚନ୍ଦ୍ରର ପାହାଡ଼ିଆ ଓ ମାଳ ଅଞ୍ଚଳରୁ ନାନା ପ୍ରକାର ଖବର ଏହା ସାହାଯ୍ୟରେ ସଂଗ୍ରହ କରିଥିଲା । ଶେଷରେ ୧୯୭୨ ମସିହା ଫେବୃୟାରୀ ୨୪ରେ ଲୁନା-୨୦ ଚନ୍ଦ୍ରକୁ ଯାଇଥିଲା ।

ଫେବୃୟାରୀ ୨୧ରେ ଏହା ପାହାଡ଼ିଆ ଅଞ୍ଚଳରେ ଓହ୍ଲାଇ ଖୋଳିବାରେ ଲାଗିଥିଲା । ଫେବୃୟାରୀ ୨୫ରେ ପୃଥିବୀରୁ ନିର୍ଦ୍ଦେଶ ପାଇ ଜହ୍ନ ରାଇଜରୁ ବିଦାୟ ନେଲା । ଋଷରେ ଓହ୍ଲାଇଲାବେଳେ ଖୁବ୍ ବର୍ଷା ହେଉଥିଲା । ହେଲେ ଲୁନାରେ ଚନ୍ଦ୍ରଧୂଳି ନିରାପଦରେ ଆସି ପାରିଥିଲା । ସେଥିରେ କୌଣସି ରୋଗ ଜୀବାଣୁ ମଧ୍ୟ ନ ଥିଲେ ।

ଋଷ ଏମିତି ଯନ୍ତ୍ରଟି ସାହାଯ୍ୟରେ ଚନ୍ଦ୍ରରୁ ମାଟି ପଥର ସଂଗ୍ରହ କରି ଆଣି ପାରିଥିଲା । ଭବିଷ୍ୟତରେ ମହାକାଶକୁ ନୂଆ ନୂଆ ଯନ୍ତ୍ରପାତି ଏମିତି ପଠାଯାଇ ପାରିବ । କଠିନ କାମ ସବୁ କରିବାରେ ଏହିପରି ଯନ୍ତ୍ର ଖୁବ୍ ସହାୟକ ହେବ । ଏଥିରେ ସନ୍ଦେହ ନାହିଁ ।

ବାଲ୍ଟିରେ ବୈଜ୍ଞାନିକ ସାର୍ ବର୍ଣ୍ଣାଡ୍ ଲୋଭେଲ କହିଥିଲେ ଯେ ଲୁନା ଆସନ୍ତା ଦଶ ବର୍ଷ ମଧ୍ୟରେ ଶୁକ୍ର ଓ ମଙ୍ଗଳ ଗ୍ରହରୁ ଏମିତି ନମୁନା ଆଣିବାକୁ ସମର୍ଥ ହୋଇ ପାରିବ ।

ଋଷ ଆଉ ଏକ ଦିଗରେ ସାରା ଜଗତରେ ଚହଲ ପକାଇ ଦେଲା । ତା ହେଲା ମହାକାଶ ଗବେଷଣା ପାଇଁ ମହାଶୂନ୍ୟରେ ଗୋଟିଏ ଘାଟି ସ୍ଥାପନ । ଋଷ ୧୯୭୧ ଏପ୍ରିଲ ୧୯ରେ ମହାକାଶରେ ଏକ ରହଣିଯାନ ବା ସାଲ୍ୟୁଟ ଥାପିଲା ।

ରେଲ ଷ୍ଟେସନରେ ଅଫିସ ରହି କେଉଁ ଗାଡ଼ି କେତେ-ବେଳେ କେଉଁଠିକୁ ଯିବ ଠିକ୍ କରେ । ଗାଡ଼ି ଚଳାଚଳ ବିଷୟରେ ଆବଶ୍ୟକ ସୂଚନା ଦିଏ । ରେଲଗାଡ଼ି କେତେବେଳେ ସେଠି ପାଣି କୋଇଲା ନିଏ । ଇଞ୍ଜିନ୍ ଆଉ ଯନ୍ତ୍ରପାତିର ପରଖ ହୁଏ । ଯାତ୍ରୀମାନେ ମଧ୍ୟ ସେଠାରେ ଗାଡ଼ିରୁ ଓହ୍ଲାଇ ଆଉ ବସନ୍ତି । ମାଲ ଲଦା ଆଉ ଓହ୍ଲାଆ ହୁଏ । ଏହି ସାଲ୍ୟୁଟ ଷ୍ଟେସନ ପରି କାମ କରିଥିଲା ।

୧୯୭୧ ଏପ୍ରିଲ ୨୪ ତାରିଖରେ ସୋୟୁଜ-୧୦ ନାମକ ମହାକାଶଯାନ ତିନିଜଣ ଯାତ୍ରୀଙ୍କୁ ଧରି ଉପରକୁ ଉଠିଲା । ପ୍ରାୟ ୨୪ ଘଣ୍ଟା ଧରି ପୃଥିବୀ ଚାରିପଟେ ୩୦ ଥର ଘୁରିଲା । ଏପ୍ରିଲ ୨୫ ତାରିଖରେ ଏହି ଯାନଟି ପୂର୍ବରୁ ଥିବା ଯାନ ସାଲ୍ୟୁଟ ସହିତ ଯୋଡ଼ି ହୋଇଗଲା । ବୈଜ୍ଞାନିକମାନେ ସାଲ୍ୟୁଟ୍ ଭିତରେ ଗବେଷଣା କେନ୍ଦ୍ରରେ ସାଢ଼େ ପାଞ୍ଚ ଘଣ୍ଟା ରହିଲେ । ନାନା ପ୍ରକାର ପରୀକ୍ଷା ଓ ପର୍ଯ୍ୟବେକ୍ଷଣ କଲେ । ତା'ପରେ ସେମାନେ ନିରାପଦରେ ପୃଥିବୀକୁ ଫେରି ଆସିଲେ ।

ସେଇ ବର୍ଷ ଜୁନ୍ ୬ ତାରିଖରେ ସୋୟୁଜ-୧୧ ମହାକାଶ ଯାନଟି ଉପରକୁ ଉଠିଲା । ସେଥିରେ ଯାଇଥିବା

ତିନିଜଣ ମହାକାଶଯାତ୍ରୀ ହେଲେ ପଚଠାୟେଭ୍, ଦେବ୍ରୋ-ଭର୍ସ୍କି, ଓ ବୋଲ୍‌କୋଭ୍ । ମହାକାଶରେ ପୂର୍ବରୁ ଦୁଇ ମାସ



[ ସୋୟୁଜଯାନ ସହିତ ସାଲ୍ୟୁଟ ମହାକାଶ ଗବେଷଣା କେନ୍ଦ୍ର ।

ହେଲା ଘୂରୁଥିବା ସାଲ୍ୟୁଟ୍ ଗବେଷଣା କେନ୍ଦ୍ରରେ ଓହ୍ଲାଇବାକୁ ସେମାନଙ୍କର ଯୋଜନା । ତା ପଛରେ ଗୋଡ଼ାଇ ଗୋଡ଼ାଇ ଶେଷରେ ସୋୟୁଜ ଯାନଟି ସାଲ୍ୟୁଟ୍ ସହିତ ଯୋଡ଼ି ହୋଇଗଲା । ମହାକାଶଯାତ୍ରୀ ତିନିଜଣ ସାଲ୍ୟୁଟ୍ ଭିତରେ ପଶି ଗଲେ । ଗୋଟିଏ ମସ୍ତବଡ଼ ଘର ପରି ତାହା ହୋଇଥିଲା । ତା ଭିତରେ ସାନ ସାନ କେତେ କୋଠରୀ । ଗାଧୁଆ ପାଧୁଆ

ଶୋଷେଇବାସ, ବନ୍ଧୁପଡ଼ା ବୈଜ୍ଞାନିକ ପରୀକ୍ଷା ଆଦି କରିବା ପାଇଁ ଅଲଗା ଅଲଗା ଘର ।

ତା ଭିତରେ ଚବିଶ ଦିନ ରହି ମହାକାଶଯାତ୍ରୀମାନେ ନାନା ପ୍ରକାର ପରୀକ୍ଷା ନିରୀକ୍ଷା କଲେ । ଗଛଗଛି କେତୋଟି ସେଠାରେ ବଢ଼ାଇଲେ । କେତେପ୍ରକାର ଫଟୋ ଉଠାଇଲେ । ଅନେକ ନୂଆ କଥା କରି ଘରବାହୁଡ଼ା ଯାତ୍ରା କଲେ । ସବୁରି ମନରେ ଅପୂର୍ବ ଆନନ୍ଦ ।

ଋଷବାସୀମାନେ ସେମାନଙ୍କୁ ସ୍ୱାଗତ କରିବାକୁ ଆଗ୍ରହରେ ଅନାଇ ରହିଛନ୍ତି । କିନ୍ତୁ ହାୟ ମାଟିମାଆର କୋଳରେ ପହଞ୍ଚିବାର ମାତ୍ର ୩୦ ମିନିଟ୍ ପୂର୍ବରୁ ଯାନ ଭିତରେ ବାୟୁର ଚାପ ମାତ୍ରା ହଠାତ୍ ବହୁତ କମିଗଲା । ସାହସୀ ମହାକାଶ-ଯାତ୍ରୀମାନେ ନିଜ ନିଜ ଆସନରେ ବସି ସବୁଦିନ ପାଇଁ ଆଖିବୁଜି ଦେଇଛନ୍ତି । ସାରା ଜଗତରେ ଶୋକର ଛାୟା ଖେଳିଗଲା ।

୧୯୭୫ ଜୁଲାଇ ୧୭ ତାରିଖ । ମହାକାଶ ଗବେଷଣ ଇତିହାସରେ ଏକ ସ୍ମରଣୀୟ ଦିନ । ଋଷ ଓ ଆମେରିକା ମଧ୍ୟରେ ଥିବା ପ୍ରତିଦ୍ୱନ୍ଦିତା କୁଆଡ଼େ ଉଭେଇଗଲା । ଉଭୟ ଦେଶର ବୈଜ୍ଞାନିକଗଣ ମହାଶୂନ୍ୟରେ ଋଷ ଦେଶର ଯାନ ସୋୟୁଜ ଓ ଆମେରିକାର ଯାନ ଆପୋଲୋର ଏକ ମିଳିତ କାର୍ଯ୍ୟକ୍ରମକୁ ସଫଳ କରିଥିଲେ ।

ଆଗପଛ ହୋଇ ଦୁଇଟି ଦେଶର ମହାକାଶଯାନ ଉପରକୁ ଛାଡ଼ା ଯାଇଥିଲା । ନିର୍ଦ୍ଦିଷ୍ଟ ସମୟର ମାତ୍ର ୭ ମିନିଟ ପୂର୍ବରୁ ଦୁଇ ଉପଗ୍ରହ ମହାକାଶରେ ସାମିଲ ହୋଇଯାଇଥିଲା ।

ଜୁଲାଇ ୧୭ରୁ ୧୯ ତିନଦିନ କାଳ ଗୋଟିଏ ମହାକାଶଯାନ ପରି କାର୍ଯ୍ୟ କରିଥିଲା । ଉଭୟ ଦେଶର ତାଲିମପ୍ରାପ୍ତ ଓ ଅଭିଜ୍ଞ ମହାକାଶଯାତ୍ରୀମାନେ ମିଳିତ ଭାବରେ ସବୁ କରିଥିଲେ ।

ମାର୍କିନ ମହାକାଶଚାରୀମାନେ ଋଷର ବନ୍ଧୁମାନଙ୍କୁ ଏବଂ ଋଷର ମହାକାଶଯାତ୍ରୀମାନେ ମାର୍କିନ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରି ଏକାଠି ଖିଆପିଆ କରିଥିଲେ । ଭାବର ଆଦାନ ପ୍ରଦାନ ହୋଇଥିଲା । ଜ୍ଞାନ ଓ କୌଶଳର ସମନ୍ୱୟ ଘଟିଥିଲା । ନାନା ପରୀକ୍ଷା ନିରୀକ୍ଷା ମିଳିମିଶି କରିଥିଲେ । ଚଉଦିଗରୁ ଅନେକ ଫଟୋ ମଧ୍ୟ ସାଥି ହୋଇ ଉଠାଇଥିଲେ ।

---

## ମହାକାଶରେ

## ଋଷ-ଭାରତ ଭାଇ ଭାଇ

ପୃଥିବୀର ପ୍ରଥମ ମହାକାଶଚାରୀ ୟୁରି ଗାଗାରିନ୍ ୧୯୬୧ ମସିହାରେ ଭାରତକୁ ଆସିଥିଲେ । ଋଷ ମହାକାଶଚାରୀଙ୍କ ସହିତ ଜଣେ ଭାରତୀୟ ମହାଶୂନ୍ୟକୁ ଯା'ନ୍ତୁ, ଏହା ଥିଲା ତାଙ୍କର କାମନା । ଏହି କାମନାକୁ ପୂରଣ କରିବାକୁ ଋଷର ରାଷ୍ଟ୍ରପତି ବ୍ରେଜ୍‌ନେଭ୍ ଚେଷ୍ଟା କରିଥିଲେ । ସେ ୧୯୮୦ ମସିହାରେ ଭାରତକୁ ଆସିଥିବାବେଳେ ଏଥିପାଇଁ ଏକ ପ୍ରସ୍ତାବ ଭାରତ ସରକାରଙ୍କୁ ଦେଇଥିଲେ ।



[ ୟୁରି ଗାଗାରିନ ]

ଭାରତୀୟ ବିମାନ ବାହିନୀର ୧୨୦ ଜଣ ଏଇ ଗୌରବ ଲାଭ କରିବାକୁ ପ୍ରାର୍ଥୀ ହୋଇଥିଲେ । ସେମାନଙ୍କ ମଧ୍ୟରୁ ବହୁ ବଛାବଛି ପରେ ମାତ୍ର ଦୁଇଜଣଙ୍କୁ ମହାକାଶଯାତ୍ରାରେ ତାଲିମ ପାଇବା ପାଇଁ ଋଷକୁ ପଠାଯାଇଥିଲା । ସେ ଦୁହେଁ ହେଲେ— ରବୀଶ ମାଲ ହୋତ୍ରା ଓ ରାକେଶ ଶର୍ମା । ସେମାନେ ସୋଭିଏତ ଋଷରେ ପ୍ରାୟ ଦେଢ଼ବର୍ଷ ଧରି ଏହି କଠୋର ତାଲିମ ପାଇଥିଲେ ।

ଶେଷରେ ରାକେଶ ଶର୍ମା ହିଁ ପ୍ରଥମ ମହାକାଶଯାତ୍ରା କରିବାକୁ ମନୋନୀତ ହେଲେ । ୧୯୮୪ ମସିହା ଏପ୍ରିଲ ୩ ତାରିଖ ସନ୍ଧ୍ୟା ସାଢ଼େ ୬ଟା ସମୟରେ ଋଷର ବୈକାନୁର ରକେଟ୍ କ୍ଷେପଣ କେନ୍ଦ୍ରରୁ ୟୁରି ମାଲସେଭ୍ ଓ ଗେନାଡ଼ି ଷ୍ଟ୍ରାକାଲୋଭଙ୍କ ସହିତ ରାକେଶ ଶର୍ମା ସୋୟୁଜ ୧୧ ଯାନରେ ମହାକାଶକୁ ଉଠିଲେ । ଯେଉଁ ରକେଟ୍ ଏହି ଯାନ-ଟିକୁ ମହାକାଶକୁ ବାହି ନେଇଥିଲା, ତା'ର ଗତିଥିଲା ସେକେଣ୍ଡକୁ ୦ କିଲୋମିଟରରୁ ଅଧିକ । ପରେ ଏହି ଗତି ଖୁବ୍ ବଢ଼ିଯାଇଥିଲା ।

ସେଦିନ ମାତ୍ର ୯ ମିନିଟ ପରେ ଏହି ମହାକାଶଯାତ୍ରୀ ତିନିଜଣ ମହାଶୂନ୍ୟର ଲକ୍ଷସ୍ଥଳରେ ପହଞ୍ଚିଥିଲେ । ତା'ପର ଦିନ ଏହି ଯାନଟି ପୂର୍ବରୁ ମହାଶୂନ୍ୟରେ ଘୂରି ବୁଲୁଥିବା ସ୍ୟାଲୁଟ୍ ୭ ଗବେଷଣାକେନ୍ଦ୍ର ସହିତ ମିଳିତ ହୋଇଥିଲା । ସେଥିରେ ଆଗରୁ ତିନିଜଣ ସୋଭିଏତ୍ ମହାକାଶଚାରୀ ରହି ନାନା ପରୀକ୍ଷା ନିରୀକ୍ଷାରେ ବ୍ୟସ୍ତ ଥିଲେ ।

ସୋୟୁଜ-୧୧ ମହାକାଶଯାନର ଯାତ୍ରୀମାନେ ସେମାନଙ୍କ ସହିତ ଯୋଗ ଦେଲେ । ସେମାନେ ପରସ୍ପରକୁ

ଆନନ୍ଦରେ କୁଣ୍ଢାଇ ପକାଇଲେ । ମଣିଷର ବନ୍ଧୁତା କେତେ ବଡ଼, ଏହାର ଚିତ୍ର ଟେଲିଭିଜନରେ ଦେଖି ସମସ୍ତେ ମୁଗ୍ଧ ହୋଇଥିଲେ ।

ସେମାନେ ମହାକାଶରେ ସାତଦିନ ରହିବା ଭିତରେ ଭାରତ ଉପରେ ୯ ଥର ଉଡ଼ିଥିଲେ । ସେହି ସମୟରେ ରାକେଶ ଶର୍ମା ଆମ ଦେଶରେ ଅନେକ ଫଟୋ ଉଠାଇଥିଲେ । ସେଥିରୁ ପ୍ରାକୃତିକ ସମ୍ପଦ, ପରିବେଶ, ପାଗ ପ୍ରଭୃତି ଅନେକ କଥା ଜାଣିହେବ ।

ଏହାଛଡ଼ା ମଣିଷର ଦେହ ମନ ଉପରେ ମହାକାଶ-ଯାତ୍ରାର ପ୍ରଭାବ ପରୀକ୍ଷା କରାଯାଇଥିଲା । ଏଥିରେ ଯୋଗ, ଆସନ ପ୍ରଭୃତିର କିପରି ସମ୍ପର୍କ ରହିଛି ଦେଖାଯାଇଥିଲା । ଏସବୁ କଥା ଜାଣିବା ପାଇଁ ନିଜେ ରାକେଶ ପ୍ରତିଦିନ ୧୦ ମିନିଟ ପାଇଁ ସେଇ ଯାନରେ ଯୋଗାସନ ଅଭ୍ୟାସ କରୁଥିଲେ ।

ଅନ୍ୟ ମହାକାଶଯାତ୍ରୀଙ୍କ ପରି ରାକେଶଙ୍କ ପୋଷାକ ଥିଲା ଧଳାମିଶା ନୀଳରଙ୍ଗର । ପୋଷାକରେ ବାମ ହାତରେ ଥିଲା ଭାରତ ଓ ଋଷର ଜାତୀୟ ପତାକାର ଚିହ୍ନ । ତା ଉପରକୁ ଥିଲା ୯ଟି ଘୋଡ଼ା ଟାଣୁଥିବା ସୂର୍ଯ୍ୟଙ୍କ ରଥର ଚିହ୍ନ । ଭାରତର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ପ୍ରତିରକ୍ଷା ମନ୍ତ୍ରୀଙ୍କ ଫଟୋ, ରାଜଘାଟରୁ ଗାନ୍ଧିଜୀଙ୍କ ସମାଧିରୁ ମାଟି ଓ କେତୋଟି ଭିଡିଓ ଆଉ ସଙ୍ଗୀତ କ୍ୟାସେଟ ରାକେଶ ନିଜ ସାଥିରେ ନେଇଥିଲେ । ସେଇ ଫଟୋ-ଗୁଡ଼ିକ ସେମାନଙ୍କ ଯାନ ଭିତରେ ଟଙ୍ଗା ଯାଇଥିଲା ।

ମହାକାଶରେ ଖାଇବା ପାଇଁ ସେମାନେ ଭାରତୀୟ ଖାଦ୍ୟ ମଧ୍ୟ ନେଇଥିଲେ । ତା' ଭିତରେ ପନିପରିବା ପଲାଉ,

ଅଲ୍‌ଗ୍ରେଲ ଓ ସ୍ନକଜତାଲୁଆ ପ୍ରଧାନ । ଋଷର ମୋଟ ୧୦୩ ପ୍ରକାର ମହାକାଶ ଉପଯୋଗୀ ଖାଦ୍ୟ ନିଆଯାଇଥିଲା । ବିଜୁଳି ଷ୍ଟୋଭରେ ଗରେଷେଇ ମଧ୍ୟ ହେଉଥିଲା । ପ୍ରତିଦିନ ସେମାନେ ସାଙ୍ଗ ହୋଇ ଗ୍ରୁତିଥର ଖିଆପିଆ କରୁଥିଲେ ।

ମହାକାଶରେ ଥିଲାବେଳେ ସେମାନେ ଭାରତୀୟ ସାମ୍ବାଦିକମାନଙ୍କର ଏକ ସମ୍ମିଳନୀରେ ବିଭିନ୍ନ ପ୍ରଶ୍ନଗୁଡ଼ିକର ଉତ୍ତର ଦେଇଥିଲେ । ଆଉ ଥରେ ସେମାନେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସହିତ କଥାବାର୍ତ୍ତା କରି-ଥିଲେ । ଇନ୍ଦିରାଗାନ୍ଧି ସେମାନଙ୍କୁ ଦେଶବାସୀଙ୍କର ସମସ୍ତ ଶୁଭେଚ୍ଛା ଓ ହାର୍ଦ୍ଦିକ ଅଭିନନ୍ଦନ ଜଣାଇଥିଲେ । ଏହା ସଙ୍ଗେ ସଙ୍ଗେ ସେ ଗୋଟିଏ ପ୍ରଶ୍ନରେ ପଚାରିଥିଲେ—ମହାଶୂନ୍ୟରୁ ଭାରତ କିପରି ଦେଖାଯାଉଛି ?




[ ରାକେଶ ଶର୍ମା ]

ରାକେଶ ହସି ହସି ଉତ୍ତର ଦେଇଥିଲେ—ସାରା ଜଗତରେ ଏହା ସବୁଠୁଁ ସୁନ୍ଦର ଦିଶୁଛି । ( ସାରା ଜହାଁସେ ଅଚ୍ଛା ହମ…)

ସେମାନେ ସତେ ଯେମିତି ଗୋଟିଏ ଘରେ ବସି କଥା ହେଉଥିଲେ ! ମହାକାଶଯାତ୍ରୀମାନେ ସେଠାରେ ହସ ହସ ମୁହଁରେ କଥାବାର୍ତ୍ତା କରୁଥିଲେ । ସ୍ନେହ ସୌହାର୍ଦ୍ଦ୍ୟ ଦେଖାଉଥିଲେ । ଆରାମରେ ଖିଆପିଆ କରୁଥିଲେ । ସେ ସବୁର ଜୀବନ୍ତ ଚିତ୍ର ଟେଲିଭିଜନରେ ଦେଖି ଦେଶ ବିଦେଶର ଦର୍ଶକମାନେ ମୁଗ୍ଧ ହେଉଥିଲେ ।

ମହାକାଶରେ ଗୋଟିଏ ସପ୍ତାହ କଟାଇ ସେମାନେ ଏପ୍ରିଲ ୧୧ ତାରିଖରେ ପୃଥିବୀକୁ ଫେରି ଆସିଥିଲେ । ଉଭୟ ଦେଶରେ ସେମାନଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଗଲା । ଋଷ ସରକାର ସେମାନଙ୍କୁ ବହୁ ବଡ ଉପାଧି ପ୍ରଦାନ କରି ଅଭିନନ୍ଦନ ଜଣାଇଥିଲେ ।

ଭାରତକୁ ସେମାନେ ସମସ୍ତେ ବୁଲି ଆସିଥିଲେ । ସବୁ ସ୍ଥାନରେ ସେମାନଙ୍କୁ କି ସ୍ନେହ ଆଦର ଆଉ ସ୍ୱାଗତ ସମ୍ବର୍ଦ୍ଧନା ! ଭାରତ ସରକାର ଓ ଅନ୍ୟାନ୍ୟ ଅନୁଷ୍ଠାନ ତରଫରୁ ସେମାନଙ୍କୁ ନାନା ଉପହାର ଓ ଉପାଧି ମିଳିଥିଲା । ଅନ୍ୟ ଦୁଇଜଣ ଋଷ ମହାକାଶଯାତ୍ରୀଙ୍କ ସହିତ ରାକେଶଙ୍କୁ "ଅଶୋକ ଚକ୍ର" ଏବଂ ରବୀଶ ମାଲହୋତ୍ରାଙ୍କୁ "କୀର୍ତ୍ତିଚକ୍ର" ଉପାଧି ଦିଆ ଯାଇଥିଲା ।

ରାକେଶ ମନଖୁସିରେ ମହାକାଶ ବୁଲି ଯାଇ ନଥିଲେ । ଆମ ଦେଶର ଜଣେ ପ୍ରତିନିଧି ଭାବରେ ସାରାଦୁନିଆରେ ଚାଲିଥିବା ମହାକାଶ ଭ୍ରମଣ ପ୍ରତିଯୋଗିତାରେ ସେ ଭାଗ ନେଇଥିଲେ । ତାଙ୍କ ଯୋଗୁ ଆମ ଦେଶ ମହାକାଶକୁ ମଣିଷ ପଠାଇବାରେ ୧୪ ତମ ରାଷ୍ଟ୍ର ହେଲା ।

ରାକେଶ ଖୁବ୍ ଧୈର୍ଯ୍ୟ, ସାହସ ଓ ବୁଦ୍ଧିମତ୍ତାର ସହିତ ଏଥିରେ ସଫଳତା ଦେଖାଇଥିଲେ । ସେ ଭାରତର ସମ୍ମାନ ବଢ଼ାଇ ପାରିଛନ୍ତି । ତାଙ୍କ ଯୋଗୁ ଆମେ ଗର୍ବ ଅନୁଭବ କରୁଛୁ ।

---